ଓଡ଼ିଶା ଶିକ୍ଷାବିଭାଗୀୟ ଡାଇରେକ୍ଟର ମହୋଦୟଙ୍କ ତା ୨୦।୩।୫୩
ରିଖର ୧ ନମ୍ବର ନୋଟିସ୍‌ରେ ଦ୍ୱିତୀୟ ଶ୍ରେଣୀର ପାଠ୍ୟ ପୁସ୍ତକରୂପେ
ନିର୍ବାଚିତ । (ଡି. ପି. ଆଇଙ୍କ ୮।୯।୫୧ ତାରିଖର ନୂତନ
ସିଲାବସ୍ ଅନୁଯାୟୀ ଲିଖିତ)

# ଜାତୀୟ ସାହିତ୍ୟ କଳିକା

## ପ୍ରଥମ ଭାଗ

(ଦ୍ୱିତୀୟ ଶ୍ରେଣୀ ନିମନ୍ତେ)

ସଂଶୋଧିତ ସଂସ୍କରଣ

୧୯୫୩

ପ୍ରକାଶକ:—

ଶ୍ରୀ ସତ୍ୟନାରାୟଣ ମିଶ୍ର

ଓଡ଼ିଶା ପବ୍ଲିସିଙ୍ଗ୍ ହାଉସ୍

ବ୍ରହ୍ମପୁର : କଟକ : ସମ୍ବଲପୁର : ବାଲେଶ୍ୱର : ଜୟପୁର

ମୂଲ୍ୟ ଗୁରିଅଣା
ଅତିରିକ୍ତ ଦୁଇଅଣା

ଲେଖକ:—

**ଶ୍ରୀ ଲୋକନାଥ ନନ୍ଦ**

ପ୍ରଧାନ ଶିକ୍ଷକ

ଭଗରପଡ଼ା ଆଦର୍ଶ ଜୁ: ପ୍ରା: ସ୍କୁଲ, କଟକ

ଓ

**ଶ୍ରୀ କାଶୀନାଥ ନାୟକ**

ପ୍ରଧାନ ଶିକ୍ଷକ

ପ୍ରତାପ ଶାସନ କେନ୍ଦ୍ର ନ: ପ୍ରା: ସ୍କୁଲ, ପୁରୀ

ସଂଶୋଧକ—

**ପଣ୍ଡିତ ଶ୍ରୀ ବାସୁଦେବ ମହାପାତ୍ର**

ମୁଦ୍ରାକର—

**ଶ୍ରୀ ରାମଚନ୍ଦ୍ର ରଥ**

ରଥ ପ୍ରେସ୍, ବ୍ରହ୍ମପୁର

୧୯୫୩

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

# ଡକାୟତ ସାଧୁ ପାଲଟିଲା

କୋଣାର୍କ ଦେଉଳ ପାଖରେ ଘରଦ୍ୱାର ନାହିଁ । ଯେଉଁଆଡ଼େ ଚାହିଁବ ଖାଲି ଝାଉଁବଣ ଓ ବାଲିପଡ଼ିଆ । ଦେଉଳ ପାଖରେ କେବଳ ବାବାଜୀ ରାମଦାସ ମଠ କରି ଥାଆନ୍ତି ।

ତାଙ୍କର ଧବଳୀ ବୋଲି ଗୋଟିଏ ଗାଈ ଥାଏ । ବାବାଜୀ ଏ ଗାଈଟିକୁ ବଡ଼ ଯତ୍ନରେ ରଖିଥାନ୍ତି ।

ଗାଈଟି ଖୁବ୍ ବଡ଼, କଇଁଫୁଲ ପରି ଧୋବ ଫର ଫର ଦେହ । ସେ ଏଡ଼େ ସୁନ୍ଦର ଯେ, ଯିଏ ଦେଖିଲେ କାହାକୁ ମୁଣ୍ଡ ହଲାଏ ନାହିଁ । ଓଳିକେ ତିନି ସେର ପର୍ଯ୍ୟନ୍ତ ଦୁଧ ଦିଏ । ତାର ଦୁଧ ବର ଅଠା ପରି ବହଳ ।

ପ୍ରତିବର୍ଷ ମାଘ ମାସରେ କୋଣାର୍କରେ ଗୋଟିଏ ବଡ଼ ମେଳା ହୁଏ । ବହୁ ସ୍ଥାନରୁ ଲୋକେ ସେ ମେଳା ଦେଖିବାକୁ ରୁଣ୍ଡ ହୁଅନ୍ତି ।

ମେଳାକୁ ଆସିବା ଲୋକମାନଙ୍କ ମଧ୍ୟରୁ କେହି କେହି ମଠରେ ଆଶ୍ରୟ ନିଅନ୍ତି । ଗାଈଟି ଲାଗି ମଠରେ ଦୁଧ ଦହିର ଅଭାବ ନ ଥାଏ । ମଠରେ ଆଶ୍ରୟ ନେଇଥିବା ଲୋକମାନେ ସେହି ଦୁଧ ଦହି ପ୍ରଭୃତି ଖାଇବାକୁ ପାଆନ୍ତି ।

ଥରେ ଛପଟ ସିଂହ ନାମରେ ଜଣେ ଡକାୟତ ସେ ମେଳାକୁ ଆସିଲା । ସେ ଡକାୟତି କରି ଯାତ୍ରୀମାନଙ୍କଠାରୁ ଧନ ଦଉଲତ ନେବାକୁ ଇଚ୍ଛା କରିଥିଲା ।

ପ୍ରଥମେ ଛପଟ ସିଂହ ଯାଇ ମଠରେ ରହିଲା । ବାବାଜୀ ତାକୁ ଖୁବ୍ ଆଦରରେ ରଖିଲେ । ଛପଟ ସବୁବେଳେ ଧବଳୀ ଗାଈର

ପ୍ରଶଂସା ଶୁଣୁଥାଏ । କପଟ ଗାଈଟିକୁ ଚୋରାଇ ନେବ ବୋଲି ସେ ମନେ ମନେ ବହୁତ ଉପାୟ ପାଞ୍ଚୁଥାଏ ।

ମେଳା ବାସିଦନ ସମସ୍ତେ ଖାଇପିଇ ଶୋଇଲା ପରେ ଛପଟ ସିଂହ ଧବଳୀକୁ ନେଇ ପଳାଇଲା । ସକାଳ ହେଲା । ଗୁହାଳରେ ଧବଳୀକୁ ନ ଦେଖି ସମସ୍ତେ ବହୁତ ଖୋଜା ଖୋଜି କଲେ ।

ସ୍ୱାମଦାସ ନିଜେ ଘୋଡ଼ାରେ ବସି ଗାଈ ଖୋଜିବା ପାଇଁ ବାହାରିଲେ ।

ଛପଟ ସିଂହ ଗାଈକୁ ଧରି ଅନେକ ଦୂର ଚାଲି ଯାଇଥିଲା । ବାବାଜୀ ଘୋଡ଼ା ଦଉଡ଼ାଇ ଯାଇ ତା ପାଖରେ ପହଞ୍ଚିବାରୁ ଛପଟ ଆହୁରି ଜୋରରେ ଚାଲିବାକୁ ଲାଗିଲା ।



ବାବାଜୀ ବଡ଼ ପାଟି କରି କହିଲେ, "ଛପଟ ! ଶୁଣ, ମୁଁ ତୁମଠାରୁ ଗାଈ ଛଡ଼ାଇ ନେବାକୁ ଆସିନାହିଁ । ମୁଁ ଗୋଟିଏ କଥା

କହିବ । ମୋ କଥା ଶୁଣିସାରି ତୁମେ ଗାଈଟି ନେଇ ଆନନ୍ଦରେ ଚାଲିଯିବ ।”

ଏକଥା ଶୁଣି ଛପଟସିଂହ ଠିଆହେଲା । ବାବାଜୀ କହିଲେ, “ତୁମେ ଗାଈଟି ନିଅ, ସେଥିରେ ମୋର ଦୁଃଖ ନାହିଁ; ମାତ୍ର ଏକଥା କାହା ଆଗରେ କହିବ ନାହିଁ । ଲୋକେ ଏକଥା ଜାଣିଲେ ଆଉ କେହି ଘରେ ଅତିଥି ରଖିବେ ନାହିଁ । ମୁଁ ତ ସବୁ ଛାଡ଼ିଛି, ମୋର ଗାଈ ଗାଈଟାରେ କଅଣ ଲୋଭ ଅଛି ? ଗାଈଟି କେବଳ ଅତିଥିଙ୍କ ସେବା ପାଇଁ ରଖିଥିଲି । ଆଜିଠାରୁ ତୁମେ ମଠର ଅତିଥି ସେବା ବନ୍ଦ କରିଦେଲ । ହଉ ତୁମ ଇଚ୍ଛା !”

ଏକଥା ଶୁଣି ଡକାୟୂତ ବିଚାରିଲା,“ବାବାଜୀ ଠିକ୍ କହୁଛନ୍ତି । ମୁଁ ଅତିଥି ହୋଇ ଯଦି ମଠରୁ ଗାଈ ଚୋରାଇ ନେଇଯିବି, ଲୋକେ ଆଉ ଅତିଥିଙ୍କୁ ଘରେ ରଖିବେ କାହିଁକି ? ନା, ମୁଁ ଗାଈ ଫେରାଇ ଦେଇ ଦୋଷ ମାନିଯିବି ।”

ବାବାଜୀଙ୍କ କଥାରେ ତା’ ମନ ବଦଳିଗଲା । ବାବାଜୀଙ୍କୁ ଗାଈଟି ଫେରାଇ ଦେଇ ତାଙ୍କ ପାଦତଳେ ପଡ଼ି କ୍ଷମା ମାଗିଲା ।

ବାବାଜୀ ତାକୁ ଉଠାଇ କହିଲେ, ଯାଅ, ଡକାୟୂତି କରିବ ନାହିଁ । ନିଜେ ପରିଶ୍ରମ କରି ଯାହା ପାଇବ ସେଥିରେ ଚଳିବ ।

ଛପଟ ସିଂହ ବାବାଜୀଙ୍କ କଥା ମାନି ସେହିଦିନୁ ଡକାୟୂତି ଛାଡ଼ିଦେଲା ।

## ପ୍ରଶ୍ନ

୧ । କୋଣାର୍କରେ ବର୍ଷର କେଉଁ ମାସରେ କେଉଁ ତିଥିରେ ମେଳା ହୁଏ ।

୨ । ଛପତି ସିଂହ ଡକାୟତି ବ୍ୟବସାୟ କପରି ଛାଡ଼ିଦେଲେ ?

୩ । ଯତ୍ନ, ଧୋବ ଫର୍ ଫର, ଲୁଣ୍ଠ, ଆଶ୍ରୟ, ପ୍ରଶଂସା, ଦଳିତ—ଏ ଶବ୍ଦଗୁଡ଼ିକ କେଉଁଠାରେ ଅଛି ବାଛି ନିଅ ଓ ଏହାର ଅର୍ଥ କହ ।

---

# ପାଦୁକା ପୂଜା

ଅନେକ ଦିନ ତଳେ ଅଯୋଧ୍ୟାରେ ଦଶରଥ ନାମରେ ଜଣେ ରାଜା ଥିଲେ । ତାଙ୍କର କୌଶଲ୍ୟା, କୈକେୟୀ ଓ ସୁମିତ୍ରା ନାମରେ ତିନୋଟି ରାଣୀ ଥିଲେ । ବଡ଼ ରାଣୀ କୌଶଲ୍ୟାଙ୍କ ପୁଅ ରାମ, ମଝିଆଁ ରାଣୀ କୈକେୟୀଙ୍କ ପୁଅ ଭରତ ଓ ସାନ ରାଣୀ ସୁମିତ୍ରାଙ୍କର ଦୁଇ ପୁଅ, ଲକ୍ଷ୍ମଣ ଓ ଶତ୍ରୁଘ୍ନ । ବଡ଼ଭାଇ ରାମ ବିଦ୍ୟା ବୁଦ୍ଧିରେ ସମସ୍ତଙ୍କୁ ବଳି ଯାଇଥିଲେ । ସେ ମିଥିଳାର ରାଜା ଜନକଙ୍କ ଝିଅ ସୀତାଙ୍କୁ ବିବାହ କରିଥିଲେ ।

ଦଶରଥ ବୁଢ଼ା ହୋଇଯିବାରୁ ବଡ଼ ପୁଅ ରାମଙ୍କୁ ରାଜଗାଦି ଦେବାକୁ ଠିକ୍ କଲେ । ସମସ୍ତେ ଏ ଖବର ପାଇ ଭାରି ଖୁସି ହେଲେ; କିନ୍ତୁ ମଝିଆଁ ରାଣୀଙ୍କୁ ଏ କଥାଟା ଜମା ଭଲ ଲାଗିଲା ନାହିଁ । ଥରେ ଦଶରଥ କୈକେୟୀଙ୍କୁ ଦୁଇଟି ବର ଦେବାକୁ କହିଥିଲେ । ସେ ଦଶରଥଙ୍କ ନିକଟକୁ ଯାଇ ସେହି ଦୁଇଟି ବର ମାଗିଲେ । ଦଶରଥ କୈକେୟୀଙ୍କ କୁଟିଳବୁଦ୍ଧି ବୁଝି ନ ପାରି ବର ଦୁଇଟି ଦେବାକୁ ସତ୍ୟ କରିଦେବାରୁ କୈକେୟୀ

ସେ ସିଂହାସନ ଉପରେ ପାଦୁକା ଦୁଇଟି ଥାପି ପ୍ରତିଦିନ ତାକୁ ପୂଜା କଲେ ଓ ସିଂହାସନ ତଳେ ବସି ରାଜକାର୍ଯ୍ୟ ବୁଝାଶୁଝା କଲେ । ସେ ନିଜେ ରାମଚନ୍ଦ୍ରଙ୍କପରି ଫଳମୂଳ ଖାଇଲେ ଓ ମୁଣ୍ଡରେ ଜଟା ବାନ୍ଧି ଗଛର ବକଳ ପିନ୍ଧିଲେ । କେବେ ଚଉଦ ବର୍ଷ ପୂରିବ ଓ ଭାଇ ବଣରୁ ଫେରି ରାଜା ହେବେ, ଏହିକଥା ସବୁବେଳେ ଭାବୁଥାନ୍ତି ।

ଗୁହୁଁ ଗୁହୁଁ ଚଉଦ ବର୍ଷ ପୂରିଗଲା । ରାମ, ସୀତା ଓ ଲକ୍ଷ୍ମଣ ବଣରୁ ଫେରି ଆସିଲେ । ଭରତଙ୍କ ମୁହଁରେ ହସ ଦେଖାଗଲା ସେ ଆନନ୍ଦରେ ରାମଚନ୍ଦ୍ରଙ୍କ ପାଦତଳେ ପଡ଼ିଗଲେ ।

ରାମ ରାଜା ହୋଇ ଅତି ସୁଖରେ ପ୍ରଜାମାନଙ୍କୁ ପାଳିଲେ । ଭରତ ଓ ଅନ୍ୟ ଭାଇମାନେ ତାଙ୍କର ପାଖରେ ଆନନ୍ଦରେ ରହିଲେ ।

## ପ୍ରଶ୍ନ

୧ । ରାମ କାହିଁକି ବଣକୁ ଗଲେ ?

୨ । ଭରତ ରାଜା ନ ହୋଇ ସିଂହାସନରେ ରାମଙ୍କ ପାଦୁକା ରଖିବା କାରଣ କଣ ?

୩ । କିଏ କାହାର କଣ କହ:—

(କ) ସୀତା ରାମଙ୍କର ?

(ଖ) ଦଶରଥ ସୀତାଙ୍କର ?

(ଗ) ଭରତ ରାମଙ୍କର ?

(ଘ) ଲକ୍ଷ୍ମଣ ଭରତଙ୍କର ?

---

# ବରଷା ହେଲା

ବରଷା ହେଲା,
ଟୁପୁରୁ ଟୁପୁରୁ ପାଣି ପଡ଼ିଲା;
ସୁଲୁସୁଲିଆ ଶୀତଳ ବାଆ
ଲଗିବାରୁ ଦେହ ଶୀତେ ଥରିଲା ।

ବରଷା ହେଲା,
ଘଡ଼ଘଡ଼ି ସଙ୍ଗେ ବିଜୁଳି ଖେଳା;
ବରଷା ଜଳେ ପୋଖରୀ ପୂରେ
ଡାହୁକର ଡାକ ଦୂରୁ ଶୁଭିଲା ।

ବରଷା ହେଲା,
ବେଙ୍ଗୁଲି ରାଣୀର ନିଦ ଭାଙ୍ଗିଲା;
ଢୁଲଢୁଲିରେ କାନ ଡେରୁଛି,
ଝିଙ୍କଡ଼ପୋକ ଯାକ ଖୁଣ୍ଟି ଖାଇଲା ।

ବରଷା ହେଲା,
ସାଧବ ବହୁଟି ପାଠ ପଢ଼ିଲା;
ସୁନା ରଙ୍ଗର କଦମ୍ବ ଫୁଲ
ଫୁଟିବାରୁ କେଡ଼େ ଶୋଭା ଦିଶିଲା ?

ବରଷା ହେଲା,
ଗଛ ଲଟା ନୂଆ ଜୀବ ପାଇଲା;
ଚଷା ଭାଇର କ୍ଷେତ ସୁନ୍ଦର
ଶାଗୁଆ ଶାଢ଼ୀରେ ମନ ମୋହିଲା ।

ବରଷା ହେଲା,
ନଈରେ ଏଣିକି ନାଆ ପଡ଼ିଲା;
ନାଉରୀ ଭାଇ ନାଆଟି ବାହି
ଏପାରି ବାଟୋଇ ସେପାରି ନେଲା ।

## ପ୍ରଶ୍ନ

୧ । ବର୍ଷା ସମୟରେ ଗୃହଅଡ଼େ କି କି ନୂଆ କଥା ଦେଖିବାକୁ ମିଳେ ।

୨ । ସାଧବ ବହୂର ଯେଉଁ ରଙ୍ଗ, ସେହି ରଙ୍ଗର ଗୋଟିଏ ଜିନିଷର ନାମ କହ ।

୩ । (କ) ବର୍ଷା ଦିନେ ନାଉରି କ'ଣ କରେ ?
(ଖ) କେଉଁ କେଉଁ ମାସରେ ବର୍ଷା ହୁଏ ?

---

# କୃପଣର ଦାନ

ଆଗେ ଆମ ଦେଶରେ ଯୁଧିଷ୍ଠିର ନାମକ ଜଣେ ରାଜା ଥିଲେ । ଥରେ ତାଙ୍କ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ଖାଇବାକୁ ନ ପାଇ ଲୋକେ ବଡ଼ କଲବଲ ହେଲେ । ପ୍ରଜାମାନଙ୍କୁ କିପରି ବଞ୍ଚାଇବେ, ରାଜା ସର୍ବଦା ଏହି ଚିନ୍ତା କଲେ ।

ମନ୍ତ୍ରୀମାନେ ଦିନେ ରାଜାଙ୍କୁ କହିଲେ, "ସ୍ୱର୍ଗରେ କୁବେର ହେଉଛନ୍ତି ବଡ଼ ଧନୀ ! ତାଙ୍କ ପାଖରୁ କିଛି ଧାନ ଆଣିବା ପାଇଁ ଭୀମଙ୍କୁ ପଠାଯାଉ ।" କଥାଟି, ରାଜାଙ୍କ ମନକୁ ପାଇଲା । ତହୁଁ ଅର

ଦିନେ ସକାଳୁ ଭୀମ କୁବେରଙ୍କ ନିକଟକୁ ଗଲେ । ଭୀମ କୁବେରଙ୍କ ଘରକୁ ପଶିଯାଇ ଦେଖିଲେ, ମୋଟେ ଦିପୋଷ ହେବ ଗୋଡ଼ମିଶା ଧାନରୁ କୁବେର ଗୋଟି ଗୋଟି କରି ଧାନତକ ବାଛୁଛନ୍ତି ।



ଏହା ଦେଖି ଭୀମଙ୍କ ମୁହଁ ଶୁଖିଗଲା । ସେ ମନେ ମନେ ଭାବିଲେ, "ଏତେ ବାଟ ଆସିବା ବୃଥା ହେଲା କି ନା ! ଯେ ଏଡ଼େ କୃପଣ, ସେ ଗୋଟାଏ ରାଜ୍ୟର ପ୍ରଜାଙ୍କୁ ବଞ୍ଚାଇବା ପାଇଁ ଧାନ ଦେବା ଅସମ୍ଭବ । ତେବେ ଭାଇ ଯେତେବେଳେ ଆଦେଶ ଦେଇଛନ୍ତି, ଥରେ ପଚାରି ଦେବା ମୋର ଉଚିତ ।"

ଏତିକିବେଳେ କୁବେର ଭୀମଙ୍କୁ ଦେଖି ତାଙ୍କ ପରିଚୟ ପଚାରିଲେ । ପରିଚୟ ପାଇ ସାରିବା ପରେ ତାଙ୍କୁ ଆସନରେ ବସାଇ ରାଜ୍ୟର ଭଲମନ୍ଦ କଥା ବୁଝିଲେ । ତାଙ୍କ ରାଜ୍ୟରେ ବର୍ଷା ନ ହୋଇ ଦୁର୍ଭିକ୍ଷ ପଡ଼ିଥିବା କଥା ଭୀମ କହିଲେ ଓ ତାଙ୍କ ନିକଟରୁ କିଛି ଧାନ ଧାର ନେବା ପାଇଁ ଯୁଧିଷ୍ଠିର ପଠାଇଥିବା କଥା ମଧ୍ୟ ଜଣାଇଲେ ।

କୁବେର ଭୀମଙ୍କ କଥା ଶୁଣି ପଚାରିଲେ, "କେତେ ଧାନ ହେଲେ ଚଳିଯିବ ?" ଭୀମ କହିଲେ, "ଲକ୍ଷେ ଶଗଡ଼ ଧାନ ହେଲେ, ଚଳିଯାଇ ପାରେ ।" ତା ପରେ କୁବେର ହସି ହସି କହିଲେ, "ଲକ୍ଷେ ଶଗଡ଼ ତ ! ହେଉ, ମୁଁ ଦେଉଛି । ସାଙ୍ଗରେ ନେଇଯାଅ । ଫସଲ ହେଲେ ମୋତେ ଫେରାଇ ଦେବ ।" ସଙ୍ଗେ ସଙ୍ଗେ ଲକ୍ଷେ ଶଗଡ଼ରେ ଧାନ ଲଦା ହେଲା । ଭୀମ ମହା ଆନନ୍ଦରେ ରାଜ୍ୟକୁ ଫେରିଲେ ।

ଅଳ୍ପ ବାଟ ଆସିବା ପରେ ଦେଖିଲେ ଯେ ବର୍ଷା ହୋଇ ରାସ୍ତା ବଡ଼ କାଦୁଅ ହୋଇ ଯାଇଛି, ଶଗଡ଼-ଚକସବୁ ପଙ୍କରେ ଟଳି ପଡ଼ୁଛି । ଖଣ୍ଡିଏ ହେଲେ ଶଗଡ଼ ଆଗକୁ ଯାଇ ପାରୁନାହିଁ ।

କ'ଣ କରିବେ କିଛି ଉପାୟ ନ ପାଇ ଭୀମ ପୁଣି କୁବେରଙ୍କ ପାଖକୁ ଫେରି ଆସି, ସବୁ କଥା କହିଲେ । କୁବେର ସବୁ ଶୁଣି-ସାରି କହିଲେ, "ଏଇ କଥା ପାଇଁ ଏତେ ଚିନ୍ତା ! ତୁମେ ଯାଇ ଆଗ ଚାରି ହଜାର ଶଗଡ଼ ଧାନ କାଦୁଅ ଉପରେ ବିଛାଇ ଦିଅ । ରାସ୍ତା ଶୁଖିଲା ହୋଇଯିବ ଓ ଅନ୍ୟ ଶଗଡ଼ ସବୁ ସୁବିଧାରେ ଯାଇ ପାରିବ । ମୁଁ ପୁଣି ଚାରି ହଜାର ଶଗଡ଼ ଧାନ ପଛରେ ପଠାଇ ଦେଉଛି ।"

ଏ ସବୁ କଥା ଶୁଣିସାରି ଭୀମ କହିଲେ, "ମହାଶୟ ! ପ୍ରଥମରୁ ଦେଖିଲାବେଳୁ ମୁଁ ଆପଣଙ୍କୁ ବଡ଼ କୃପଣ ବୋଲି ଭାବିଥିଲି । ମାତ୍ର ବର୍ତ୍ତମାନ ବୁଝୁଛି, ମୋର ସେ ଧାରଣା ନିତାନ୍ତ ଭୁଲ ।"

କୁବେର ହସି ହସି କହିଲେ, "ହଁ, ମୋତେ ଅନେକ କୃପଣ ବୋଲି କହନ୍ତି । ମନେରଖ ଧନ ଉପାର୍ଜନ କଲାବେଳେ ପାହୁଲାଟିକୁ ବା ଗୋଟିଏ ଧାନକୁ ସାମାନ୍ୟ ବୋଲି ଭାବି ଫୋପାଡ଼ି ଦେବନାହିଁ । ପାହୁଲାଏ ପାହୁଲାଏ ହୋଇ ଠଙ୍କାଟିଏ ହୁଏ । ମାତ୍ର ଯେତେବେଳେ

ଖର୍ଚ୍ଚ କରିବା ଦରକାର ହେବ, ସେତେବେଳେ ଠିକଏ ହେଲେ କୁଣ୍ଠିତ ନ ହୋଇ ଖର୍ଚ୍ଚ କରିବ । ଯାଅ, ଧାନ ନେଇ ଅଗ ପ୍ରଜା-ମାନଙ୍କୁ ବଞ୍ଚାଅ ।

ଭୀମ କୁବେରଙ୍କଠାରୁ ଆସି ତାଙ୍କର କହିବା ଅନୁସାରେ ଧାନ ନେଇ ରାଜ୍ୟରେ ପହଞ୍ଚିଲେ ।

## ପ୍ରଶ୍ନ

୧ । ଭୀମ କୁବେରଙ୍କୁ କାହିଁକି କୃପଣ ବୋଲି ଭାବିଥିଲେ ? ପରେ କିପରି ତାଙ୍କର ଏ ଧାରଣା ଦୂର ହେଲା ?

୨ । କୁବେର ଧନ ସାଇତି ରଖିବା ପାଇଁ କି ପ୍ରକାର ଉପଦେଶ ଦେଇଥିଲେ ?

୩ । ଦୁର୍ଭିକ୍ଷ, ଉପାୟ, ପରାମର୍ଶ, ଉପାର୍ଜନ ଧାରଣା— ଏ ଶବ୍ଦ-ମାନଙ୍କର ଅର୍ଥ କହ ।

---

# ମନ୍ତ୍ରୀଙ୍କ ବୁଦ୍ଧି

ଅଗେ ଆମ ଓଡ଼ିଶାରେ ଜଣେ ରାଜା ଥିଲେ । ତାଙ୍କ ନାଁ ପୁରୁଷୋତ୍ତମ ଦେବ । ସେ ପୁରୀରେ ରହୁଥିଲେ । ଓଡ଼ିଶାର ଠିକ୍ ଦକ୍ଷିଣରେ କାଞ୍ଚି ବୋଲି ଗୋଟିଏ ରାଜ୍ୟ ଥିଲା । ସେ ରାଜାଙ୍କର ଅତି ସୁନ୍ଦରୀ ଝିଅଟିଏ ଥିଲା, ତା ନାଁ ପଦ୍ମାବତୀ । ପୁରୁଷୋତ୍ତମ-ଦେବଙ୍କର ଏଇ ପଦ୍ମାବତୀଙ୍କ ସହିତ ବିବାହ ହେବାର ସବୁ ଠିକ୍ ହୋଇଥାଏ ।

ଥରେ କାଞ୍ଚିରାଜା ପୁରୀର ରଥଯାତ୍ରା ଦେଖିବାକୁ ଆସିଥିଲେ । ଏଇ ଯାତ୍ରା ଭାରତର ଗୋଟିଏ ବଡ଼ ଯାତ୍ରା । ଏହାକୁ ଦେଖିବା-ପାଇଁ ଲକ୍ଷ ଲକ୍ଷ ଯାତ୍ରୀ ଆସନ୍ତି । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ତିନି ଗୋଟି ରଥ ହୁଏ । ତିନି ଠାକୁର ତିନି ରଥରେ ବସନ୍ତି । ବଡ଼ ବଡ଼ କଡ଼ା ଦଉଡ଼ି ରଥ ଦେହରେ ବନ୍ଧା ହୋଇ ଥାଏ । ଲୋକମାନେ ଏଇ ଦଉଡ଼ି ସାହାଯ୍ୟରେ ରଥକୁ ଭିଡ଼ି ଭିଡ଼ି ନେଇ ଗୁଣ୍ଡିଚା ଘର ପାଖରେ ଲଗାନ୍ତି । ଗୁଣ୍ଡିଚା ଦିନ ପୁରୀ ରାଜା ହାତରେ ସୁନା ଝାଡ଼ୁ ଧରି ରଥ ଓଳାନ୍ତି । ସେ ବର୍ଷ ପୁରୁଷୋତ୍ତମଦେବ ହାତରେ ସୁନା ଝାଡ଼ୁ ଧରି ରଥ ଓଳାଇଲେ । କାଞ୍ଚିରାଜାଙ୍କୁ ଏ କଥା ଜମା ଭଲ ଲାଗିଲା ନାହିଁ ।

ସେ ନିଜ ରାଜ୍ୟକୁ ବାହୁଡ଼ି ଯାଇ ପୁରୁଷୋତ୍ତମଙ୍କ ପାଖକୁ ଖବର ଦେଲେ, "ପୁରୁଷୋତ୍ତମ ! ମୁଁ ରାଜା । ମୋର ଝିଅକୁ ମୁଁ ରାଜାର ସହିତ ବିବାହ ଦେବାକୁ ଚାହେଁ, ଚଣ୍ଡାଳ ସହିତ ନୁହେଁ । ତୁମେ ରାଜା ହୋଇ ଚଣ୍ଡାଳ ପରି ହାତରେ ଝାଡ଼ୁ ଧରି ଓଳାଅ । ମୁଁ ଏ କଥା ନିଜେ ଦେଖିଛି । ଏଣୁ ତୁମ ପରି ଲୋକ ସହିତ କାଞ୍ଚି ରାଜ ଝିଅର ବିବାହ ହୋଇ ପାରିବ ନାହିଁ ।"

ଏ ଖବର ପାଇବା ମାତ୍ରେ ପୁରୁଷୋତ୍ତମ ରାଗରେ ନିଆଁପରି ହୋଇଗଲେ । ବିବାହ କଥା ତ ଭାଙ୍ଗିଗଲା । ପୁରୁଷୋତ୍ତମ ସଙ୍ଗେ ସଙ୍ଗେ ସୈନ୍ୟ ସଜାଇ କରି କାଞ୍ଚି ରାଜ୍ୟ ଜୟ କରିବାକୁ ବାହାରିଲେ ।

ଖୁବ୍ ଯୁଦ୍ଧ ହେଲା । ମାତ୍ର ପୁରୁଷୋତ୍ତମଦେବ ହାରିଗଲେ । ଯୁଦ୍ଧରେ ହାରିଯିବାରୁ ପୁରୁଷୋତ୍ତମଙ୍କୁ 'ବଡ଼' ଅପମାନ ହେଲା । ତେଣୁ ସେ ଜଗନ୍ନାଥଙ୍କ ପାଖରେ ଗୁହାରିଆ ପଡ଼ିଲେ ।

ରାଜାଙ୍କ ଭକ୍ତିରେ ଜଗନ୍ନାଥ ଖୁସି ହୋଇ ତାଙ୍କୁ ସ୍ୱପ୍ନରେ କହିଲେ, "ଯା, ଆଉ ବିଳମ୍ବ କରନା; ଏଥର ତୁ ନିଶ୍ଚୟ ଜୟଲାଭ କରିବୁ ।" ଜଗନ୍ନାଥଙ୍କଠାରୁ ବର ପାଇ ରାଜା ବହୁତ ସୈନ୍ୟ ଧରି ପୁଣି କାଞ୍ଚି ରାଜାଙ୍କ ସହିତ ଯୁଦ୍ଧ କରିବାକୁ ଗଲେ ।



( ମନ୍ତ୍ରୀ ପଦ୍ମାବତୀଙ୍କୁ ଅର୍ପଣ କରୁଅଛନ୍ତି )

ଭାରି ଯୁଦ୍ଧ ଲାଗିଲା । ଶେଷରେ କାଞ୍ଚିରାଜା ହାରିଗଲେ । ପୁରୁଷୋତ୍ତମ କାଞ୍ଚି ଜୟକରି କାଞ୍ଚିଜେମା ପଦ୍ମାବତୀଙ୍କୁ ଆଣି ମନ୍ତ୍ରୀଙ୍କୁ ଦେଇ କହିଲେ, "ମନ୍ତ୍ରୀ, ଜେମାଙ୍କୁ ଗୋଟିଏ ଚଣ୍ଡାଳ ସହିତ ବିବାହ କରାଇ ଦେବ ।"

ମନ୍ତ୍ରୀ ପଦ୍ମାବତୀଙ୍କୁ ଆଣି ଖୁବ୍ ଆଦର ଯତ୍ନରେ ନିଜ ଘରେ ଲୁଚାଇ ରଖିଥିଲେ ।

କିଛି ଦିନ ପରେ ପୁଣି ଗୁଣ୍ଡିଚା ଯାତ୍ରା ପଡ଼ିଲା । ଲକ୍ଷ ଲକ୍ଷ ଯାତ୍ରୀ ରୁଣ୍ଡ ହେଲେ । ପୁରୁଷୋତ୍ତମ ସୁନାଖଡ଼ିକାରେ ରଥ ଓଳାଉ-ଛନ୍ତି, ଏପରି ସମୟରେ ମନ୍ତ୍ରୀ ପଦ୍ମାବତୀଙ୍କୁ ସଙ୍ଗରେ ଧରି ରାଜାଙ୍କ ପାଖକୁ ଯାଇ କହିଲେ, "ମଣିମା ! ଏ କନ୍ୟାଟିକୁ ଚଣ୍ଡାଳ ସହିତ ବିବାହ ଦେବା ପାଇଁ ଆପଣ ମୋତେ ଆଦେଶ ଦେଇଥିଲେ । ଆପଣ ରାଜା ହେଲେ ମଧ୍ୟ ବର୍ତ୍ତମାନ ଚଣ୍ଡାଳର କାର୍ଯ୍ୟ କରୁଛନ୍ତି, ତେଣୁ ଆପଣ ପଦ୍ମାବତୀଙ୍କୁ ଗ୍ରହଣ କରନ୍ତୁ ।"

ପୁରୁଷୋତ୍ତମ ମନ୍ତ୍ରୀଙ୍କ କୌଶଳ ବୁଝିପାରି ମନେ ମନେ ହସିଲେ । ପରେ ପଦ୍ମାବତୀଙ୍କୁ ବିବାହ କରି ସୁଖରେ ରହିଲେ ।

ସମସ୍ତେ ମନ୍ତ୍ରୀଙ୍କ ବୁଦ୍ଧିକୁ ଖୁବ୍ ପ୍ରଶଂସା କଲେ ।

## ପ୍ରଶ୍ନ

୧ । କାଞ୍ଚି ରାଜା ଓଡ଼ିଶାର ରାଜାଙ୍କୁ ତାଙ୍କ ଝିଅ ବିବାହ କରାଇବାକୁ ମନା କରିବାର କାରଣ କ'ଣ ?

୨ । ମନ୍ତ୍ରୀ କିପରି ବୁଦ୍ଧି କରି ପୁରୁଷୋତ୍ତମ ଦେବଙ୍କ ସହିତ ପଦ୍ମାବତୀଙ୍କୁ ବିବାହ କରାଇଲେ ?

୩ । ବାଟରେ ନାଆଁ ପରି ହେବା, କୌଶଳ, ଆଦର, ମନ୍ତ୍ରୀ, ଆକ୍ରମଣ ଏ ଗୁଡ଼ିକର ଅର୍ଥ କହ ଓ ଏ ଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।

---

# ବରଫ-ଦେଶର କଥା

ଆମ ଦେଶର ଉତ୍ତର ପଟରେ ଗୋଟିଏ ଦେଶ ଅଛି । ତାକୁ ବରଫ-ଦେଶ ବୋଲି କହନ୍ତି । ସେ ଦେଶରେ ଖୁବ୍ ଶୀତ ହୁଏ । ତେଣୁ ସମୁଦ୍ର ପାଣି ବରଫ ପାଲଟିଯାଏ । ସେ ଦେଶର ଲୋକମାନେ ବରଫ ଉପରେ ଘର କରି ରହନ୍ତି । ସେଠାରେ ଛଅମାସ ଦିନ ଓ ଛଅ ମାସ ରାତି ହୁଏ ।

ବରଫ ଦେଶର ଲୋକମାନେ ବେଶୀ ଉଚ୍ଚ ନୁହନ୍ତି । ଦେହର ବର୍ଣ୍ଣ ଗୋରା ଓ ମୁଣ୍ଡବାଳ ଗାଢ଼ କଳା ଅଟେ । ଏ ଦେଶ ଅତ୍ୟନ୍ତ ଥଣ୍ଡା ଥିବାରୁ ଲୋକମାନେ ଆଦୌ ଗାଧୁଅନ୍ତି ନାହିଁ; ତେଣୁ ଦେହର ମଇଳା ଲାଗି ଦୁର୍ଗନ୍ଧ ବାହାରୁଥାଏ । ଗାଈ ତା ବାଛୁରୀକୁ ଚାଟି ସଫା କଲାପରି ଏ ଦେଶର ମା'ମାନେ ଛୋଟ ଛୋଟ ପିଲାମାନଙ୍କ ଦେହକୁ ଚାଟି ସଫା କରନ୍ତି । ଏମାନଙ୍କୁ ଏସ୍କିମୋ ବୋଲି କୁହାଯାଏ ।

ଏ ଦେଶରେ କୌଣସି ଗଛ ଲତା ଜନ୍ମେ ନାହିଁ । ଫସଲ ମଧ୍ୟ ଆଦୌ ହୁଏ ନାହିଁ; ତେଣୁ ଏମାନେ ଆମ୍ଭମାନଙ୍କ ପରି ଚାଉଳ, ମୁଗ, ଗହମ ପ୍ରଭୃତି ଖାଇବାକୁ ପାଆନ୍ତି ନାହିଁ । ମାଂସ ଏସ୍କିମୋ-ମାନଙ୍କର ପ୍ରଧାନ ଖାଦ୍ୟ । ବରଫ ଉପରେ ଧଳାଭାଲୁ ଓ ବଲ୍ଗା ହରିଣ ସବୁ ଦେଖାଯାନ୍ତି । ଏସ୍କିମୋମାନେ ଏମାନଙ୍କୁ ଶିକାର କରି ଖାଆନ୍ତି । ସମୁଦ୍ରରୁ ସୀଲ୍ ବୋଲି ଏକପ୍ରକାର ମାଛ ମଧ୍ୟ ମାରି ତାର ମାଂସ ଖାଆନ୍ତି । ଚମଡ଼ାରେ ତମ୍ବୁ ଓ ପୋଷାକ ତିଆରି କରନ୍ତି । ସୀଲ୍ ମାଛର ଚର୍ବିକୁ ଦୀପରେ ପକାଇ ଜାଳନ୍ତି ।

ଏ ଦେଶରେ ଘାସ ଆଦୌ ଜନ୍ମେ ନାହିଁ; ତେଣୁ ଗୋରୁ ଘୋଡ଼ା ଏଠାରେ ଦେଖାଯାନ୍ତି ନାହିଁ । କୁକୁର ମାଂସ ଖାଇ ବଞ୍ଚୁ-



ଥିବାରୁ ଏସ୍କିମୋମାନେ କୁକୁର ପାଳନ୍ତି । ଏଇ କୁକୁରମାନେ ମଧ୍ୟ ଏସ୍କିମୋମାନଙ୍କର ଏକ ପ୍ରକାର ଚକ ନ ଥିବା ଘୋଷରା ଗାଡ଼ି ଟାଣନ୍ତି । ଏସ୍କିମୋମାନେ କୌଣସି ଗୋଟିଏ ସ୍ଥାନରେ ବେଶୀ ଦିନ ରହନ୍ତି ନାହିଁ । ଯେଉଁଠାରେ ଶିକାର ମିଳିବାର ସୁବିଧା ଥାଏ ସେଠାକୁ ତମ୍ବୁ ଓ ଅନ୍ୟାନ୍ୟ ଜିନିଷ ବୋହି ନିଅନ୍ତି । ଗ୍ରୀଷ୍ମ ଋତୁରେ ବରଫ ତରଳିଯାଏ । ତେଣୁ ଏହି ସମୟରେ ସେମାନେ ବେଶୀ ଶିକାର କରି ଶୀତଦିନ ପାଇଁ ମାଂସ ସାଇତି ରଖନ୍ତି ।

ଏସ୍କିମୋ ସ୍ତ୍ରୀ ଓ ପୁରୁଷ ଏକ ପ୍ରକାର ପୋଷାକ ପିନ୍ଧିଥାନ୍ତି । ସ୍ତ୍ରୀଲୋକମାନେ ହାଡ଼ରେ ଛୁଞ୍ଚି ତିଆରି କରି ପୋଷାକ ସିଲେଇ କରନ୍ତି । ଚମଡ଼ାକୁ ସ୍ତ୍ରୀମାନେ ଦାନ୍ତରେ ଚୋବାଇ ନରମ କରି, ପରେ ହାଡ଼ ଛୁଞ୍ଚିରେ ସିଲେଇ କରନ୍ତି । ଏଣୁ ଯେଉଁ ସ୍ତ୍ରୀର ଦାନ୍ତ ବଡ଼ ଓ ମଜବୁତ ତାକୁ ସମସ୍ତେ ଆଦର କରନ୍ତି ।

ଦଅସିଲ୍ କ'ଣ ଏମାନେ ଜାଣନ୍ତି ନାହିଁ । ନିଆଁ ଦରକାର ହେଲେ, ଗୋଟିଏ ବାଡ଼ ଅଗରେ ସୀଲ୍ ମାଛର ଚମଡ଼ା ଗୁଡ଼ାଇ ଖୁବ୍ ଜୋରରେ ବାଡ଼ଟିକୁ ବୁଲାଇଲେ ନିଆଁ ବାହାରେ । ଅମେ ଆମର କୌଣସି ବନ୍ଧୁଙ୍କୁ ଦେଖିଲେ ନମସ୍କାର କରୁଁ । ମାତ୍ର ଏସ୍କିମୋମାନେ ତାଙ୍କର ବନ୍ଧୁଙ୍କୁ ଦେଖିଲେ ନାକରେ ନାକ ଘଷନ୍ତି ।

## ପ୍ରଶ୍ନ

୧ । ବରଫ ଦେଶ ଅମ ଦେଶଠାରୁ କେଉଁ କେଉଁ ଗୁଣରେ ପୃଥକ୍ ଅଟେ, ତାହା ଲେଖ ।

୨ । ଏସ୍କିମୋମାନଙ୍କର ପ୍ରଧାନ ଖାଦ୍ୟ କ'ଣ ଓ ସେମାନେ ବନ୍ଧୁଙ୍କୁ କିପରି ନମସ୍କାର କରନ୍ତି ?

୩ । ପ୍ରଧାନ, ଚର୍ବି, ତମ୍ବୁ, ନିଆଁ—ଏଗୁଡ଼ିକ ଲଗାଇ ବାକ୍ୟ ଗଢ଼ ।

---

# ଖେଳିବା ଆସ ଖେଳ

ପଢ଼ା ସରିଲା ଅସ ରେ ଭାଇ !
ଖେଳିବା ଏବେ ଖେଳ
ଖେଳିଲେ ମନ ରହିବ ଭଲ,
ଦେହରେ ହେବ ବଳ ।

କହ୍ ତ ଭାଇ ଦୁନିଆଁ ଠାରେ
ନ ଖେଳି କିଏ ଅଛି ?



ଅଳସୁଆ ସେ ନ ଖେଳିବ ଯେ,
କହିବା ତାକୁ ଛି ! ଛି !
ପାଣିରେ ଖେଳେ କେରାଣ୍ଡି ମାଛ,
ଖେଳଇ ହଂସରାଳି,
ବଉଦ କୋଳେ ଜହ୍ନମାମୁଁଟି
ଖେଳଇ ଲୁଚକାଳି ।

ଫୁରୁଫୁରୁ ବେଙ୍ଗୁଲି ଉଏଁ,
ମିରଗ ମାରେ ଚରା;
କେତେ ଚଞ୍ଚଳ ଠେକୁଆ ଉଏଁ,
ପଡ଼ଇ ନାହିଁ ଧରା ।

ଖେଳିବା ଅସ ଦାଣ୍ଡ ଦୁଆରେ
ହୋଇବ ବଡ଼ ମଜା,
ଖେଳିଲେ ଦେହ ହୋଇବ ଠାଣ
ରକତ ହେବ ତାଜା ।

ସକଳେ ମିଳି ଖେଳିବା ଖେଳ
ବହିଲେ ଦେହୁ ଝାଳ,
ଖେଳ ଭାଙ୍ଗିବା, ଘରକୁ ଯିବା
ପକାଇ 'ହରିବୋଲ ।'

ବଡ଼ ହୋଇଲେ ହୋଇବା ବୀର,
ଲଢ଼ିବା ଦେଶ ପାଇଁ,
ଦେହରେ ଯଦି ନ ଥିବ ବଳ
କଷ୍ଟ କରିବା ପାଇଁ ?

## ପ୍ରଶ୍ନ

୧ । ଖେଳିବା ଦ୍ୱାରା କି ଉପକାର ହୁଏ ?

୨ । ଲସ୍ସମାମୁ, କେରଣ୍ଡିମାଛ, ବେଙ୍ଗୁଳି ଓ ଚଠକୁଅ—ଏମାନେ କେଉଁଠି ଖେଳନ୍ତି ?

୩ । ଶେଷ ଦୁଇ ଧାଡ଼ିରୁ କ'ଣ ବୁଝିଲ ?

# ଅଳକା ଆଶ୍ରମରେ ସଭା

କମଳ—ବାପା, ଅଳକା ଆଶ୍ରମରେ ଏତେ ଲୋକ କାହିଁକି ଜମା ହୋଇଥିଲେ ?

ବାପା—ଆଜି ପରା ମହାତ୍ମା ଗାନ୍ଧିଙ୍କ ଜନ୍ମଦିନ । ମହାତ୍ମାଙ୍କ କଥା ଶୁଣିବାକୁ ଏ ଲୋକ ସବୁ ବହୁ ଦୂରରୁ ଆସିଥିଲେ ।

କମଳ—ମୋ ଜନ୍ମଦିନରେ ତ ଏତେ ଲୋକ ଏକାଠି ହୁଅନ୍ତି ନାହିଁ ! ତାଙ୍କ ଜନ୍ମଦିନରେ କାହିଁକି ଏତେ ଲୋକ ଏକାଠି ହୋଇଥିଲେ ?

ବାପା—ତୁ ତ ମହାତ୍ମା ଗାନ୍ଧିଙ୍କପରି ଦେଶ ଲୋକଙ୍କର ଉପକାର କରୁ ନାହୁଁ । ସେ ଏ ଦେଶ ଲୋକଙ୍କ ପାଇଁ ବହୁତ କାମ କରିଛନ୍ତି । ସେ ନିଜର ଘରଦ୍ୱାର, ଟଙ୍କା ପଇସା, ସବୁ ଛାଡ଼ି ଦେଶଲୋକଙ୍କ ଭଲ ପାଇଁ ଲାଗି ପଡ଼ିଥିଲେ । ଆମ ଦେଶର ଲୋକ ପେଟକୁ ମୁଠେ ଦାନା ଓ ପିଠିକୁ ଖଣ୍ଡେ କନା ଯୋଗାଇବା ପାଇଁ ଇଂରେଜ ସରକାର ସଙ୍ଗେ କେତେ ବିବାଦ କଲେ ! ଶେଷକୁ ଇଂରେଜ ସରକାର ଏ ଦେଶ ଛାଡ଼ି ଚାଲିଗଲେ । ଗାନ୍ଧି ମହାତ୍ମା ଜଣେ ବଡ଼-ଲୋକ । ତୁ ବଡ଼ ହେଲେ ତାଙ୍କ ବିଷୟରେ ଆହୁରି ବହୁତ କଥା ଜାଣିବୁ ।

କମଳ—ବାପା, ସଭା ମଞ୍ଚରେ ଠିଆ ହୋଇ ଯେ କହୁଥିଲେ, ସେ କିଏ ?

ବାପା—ତାଙ୍କୁ ତୁ ଚିହ୍ନି ନାହୁଁ ? ସେ ପରା ଆମ ଅଞ୍ଚଳର ଜଣେ ବଡ଼ ଲୋକ ! ତାଙ୍କ ଘର କଟକ ଜିଲାର ଖେରସ ଗ୍ରାମରେ । ତାଙ୍କ ନାଁ ଶ୍ରୀମତୀ ରମା ଦେବୀ । ସେ ବଡ଼

ଘରର ଝିଅ ଓ ବଡ଼ ଲୋକର ପତ୍ନୀ ହୋଇ ସବୁ ଛାଡ଼ି-ଦେଇ ରାମଚନ୍ଦ୍ରପୁରରେ ଆଶ୍ରମ କରି ରହିଛନ୍ତି । କ'ଣ କଲେ ଗାଁ ଲୋକମାନେ ସୁଖରେ ରହିବେ; ସେଇ କଥା ସେ ଲୋକଙ୍କୁ ବୁଝାଉଛନ୍ତି ।

କମଳା—ଅଚ୍ଛା ! ସେ କ'ଣ କହୁଥିଲେ ?

ବାପା—ମହାତ୍ମା ଗାନ୍ଧି ଗାଁ ଲୋକଙ୍କ ଭଲ ପାଇଁ ଯେଉଁ ଉପଦେଶ ଦେଉଥିଲେ, ସେହି କଥାମାନ ଆଜି ତାଙ୍କ ଜନ୍ମ ଦିନରେ ରମା ଦେବୀ ବୁଝାଉଥିଲେ ।

କମଳ—ମହାତ୍ମା ଗାଁଲୋକଙ୍କୁ କି ଉପଦେଶ ଦେଉଥିଲେ ?

ବାପା—ସେ କହୁଥିଲେ, "ହାତରେ ହଳକରି ବିଲରେ ଧାନ, ମୁଗ, ବିରି ପ୍ରଭୃତି ଫସଲ କର । ବାଡ଼ି ବଗିଚାରେ ପରିବା କର । ନିଜେ କପା କରି ସୂତା କାଟ । ହାତରେ ଲୁଗା ବୁଣି ପିନ୍ଧ । ଗ୍ରାମ ସଫାଇ କାମରେ ମନ ଦିଅ । ବିଦେଶୀ ଜିନିଷକୁ ନ ଛୁଅଁ ଯାହା ଆମ ଦେଶରେ ମିଳୁଛି ସେଥିରେ ଚଳ ।"

କମଳା—"ଗ୍ରାମ ସଫାଇ କ'ଣ ?"

ବାପା—ଗ୍ରାମ ସଫାଇର ଅର୍ଥ ହେଉଛି ଗାଁକୁ ସଫାସୁତୁରା ରଖିବା । ଆମ ଲୋକେ ବୁଝି ନ ପାରି ପୋଖରୀ ହୁଡ଼ାରେ, ନଈ-ବନ୍ଧରେ, ବାଟଘାଟରେ ଝାଡ଼ା ଫେରୁଚନ୍ତି । ଏପରି କରିବା ଉଚିତ ନୁହେ । ପ୍ରତି ଘର ବାଡ଼ିରେ ଉଠା ପାଇଖାନା କର । ଦାଣ୍ଡ ବାଡ଼ି ସଫା ରଖ, ରାସ୍ତା ପରିଷ୍କାର କର । ଗାଁରେ ଦଳପୋଖରୀ, ଅଳମା ଜାଗା ରଖ ନାହିଁ । ତା ହେଲେ ଗାଁରେ ରୋଗ ପଶି ପାରିବ ନାହିଁ ।

କମଲା – ଏହା ତ ଖୁବ୍ ଭଲ କଥା । ସେଦିନ ପରା ଗୁରୁଜୀ କହୁ-
ଥିଲେ, ଏଇଥିପାଇଁ ମେଲେରିଆ ଜର ଗାଁ ଗାଁରେ ବସା
ବାନ୍ଧି ରହିଛି । ବାପା ! ସମସ୍ତେ ଏଇ କଥା ମାନି
ଚାଲିଲେ ତ ଭାରି ଭଲ ହୁଅନ୍ତା ।

ବାପା—ନିଶ୍ଚୟ ଭଲ ହୁଅନ୍ତା । ଲୋକମାନେ ଅସ୍ତେ ଅସ୍ତେ ସବୁ
କଥା ବୁଝୁଛନ୍ତି ।

କମଲା—ଆଚ୍ଛା ବାପା ! ତୁମେ ଏ ଫଳଗଛଗୁଡ଼ିକ କାହିଁକି ଆଣିଛ ?

ବାପା—ମହାତ୍ମାଜୀଙ୍କ ଜନ୍ମଦିନରେ ଫଳଗଛଗୁଡ଼ିକ ଲଗାଇବାକୁ
ନେଉଛୁ । ମୋ ସଙ୍ଗରେ ଆ, କେତୋଟି ଗଛ ତୁ
ନିଜେ ଲଗାଇବୁ ।

## ପ୍ରଶ୍ନ

୧ । ତୁମ ସ୍କୁଲରେ ମହାତ୍ମା ଗାନ୍ଧିଙ୍କ ଜନ୍ମତିଥି କପରି ଭାବରେ
ପାଳିତ ହୁଏ ?

୨ । ରମାଦେବୀ ସଭାରେ ଲୋକମାନଙ୍କୁ କ'ଣ ବୁଝାଉଥିଲେ ?

୩ । ଶୂନ୍ୟସ୍ଥାନ ପୂରଣ କର:—
(କ) ପ୍ରତି ଘର ବାଡ଼ରେ —— କର ।
(ଖ) ଗାଁରେ ଦଳ—ବଳ ନାହିଁ ।
(ଗ) ରାସ୍ତା — ରଖ ।

# ତାପଙ୍ଗ ଦଳବେହେରା

ଆଗେ ଖୋର୍ଦ୍ଧାରେ ଗୋଟିଏ ଗଡ଼ ଥିଲା । ସେଠାରେ ବହୁତ ସୈନ୍ୟ ଥାଆନ୍ତି ଓ ତୋପ ବନ୍ଧୁକ ପ୍ରଭୃତି ହାତହତିଆର ଥାଏ । ଇଂରେଜମାନେ ଆମ ଓଡ଼ିଶା ଜୟ କରିବାକୁ ଆସି ଖୋର୍ଦ୍ଧାରେ ପଶିଲେ । ଖୋର୍ଦ୍ଧାଗଡ଼ର ସୈନ୍ୟମାନେ ଖୁବ୍ ଲଢ଼େଇ କରି ଶେଷକୁ ହାରିଗଲେ । ଖୋର୍ଦ୍ଧାରେ ଇଂରେଜମାନେ ରାଜା ହେଲେ ।

ଖୋର୍ଦ୍ଧା ପାଖରେ ତାପଙ୍ଗ ବୋଲି ଗୋଟିଏ ବଡ଼ ଗଡ଼ ଥାଏ । ସେଠାରେ ଜଣେ ସାଆନ୍ତ ରାଜା ଥାଆନ୍ତି । ତାଙ୍କୁ ସମସ୍ତେ ଦଳବେହେରା ବୋଲି କହନ୍ତି । ସେ ଭାରି ଦୟାଳୁ ଲୋକ ଥିଲେ ଓ ପ୍ରଜାମାନଙ୍କୁ ପୁଅ ପରି ପାଳୁଥିଲେ ।

ଇଂରେଜ ସୈନ୍ୟ ଖୋର୍ଦ୍ଧାଠାରୁ ତାପଙ୍ଗ ଗଡ଼ ଜୟ କରିବାକୁ ଆସିଲେ । ତାପଙ୍ଗ ଗଡ଼ର ପାଇକମାନଙ୍କ ସହିତ ଇଂରେଜ ସୈନ୍ୟଙ୍କର ଭୟଙ୍କର ଯୁଦ୍ଧ ହେଲା । ଗୋରା ସାହେବମାନେ ପାଇକମାନଙ୍କ ଯୁଦ୍ଧ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସାତ ଦିନ ଯୁଦ୍ଧ ପରେ ଦଳବେହେରା ହାରିଯାଇ ବଣକୁ ପଳାଇଲେ ।

ପ୍ରଜାମାନେ ଦଳବେହେରାଙ୍କୁ ନ ଦେଖି ତାଙ୍କର ଗୁଣ ସୁମରି ଝୁରିହେଲେ । ଇଂରେଜ ହାକିମଙ୍କୁ ଦଳବେହେରାଙ୍କ ପ୍ରଶଂସା ସୁଖ ଲାଗିଲା ନାହିଁ । ତେଣୁ ସେ ଡେଙ୍ଗୁରା ଦେଲେ, "ଯେଉଁ ଲୋକ ଦଳବେହେରାର ମୁଣ୍ଡକାଟି ଆଣିଦେବେ, ତାଙ୍କୁ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦିଆଯିବ ।"

ଧନ ପାଇବା ଲୋଭରେ ବହୁ ଲୋକ ଦଳବେହେରାଙ୍କୁ ଖୋଜିବାରେ ଲାଗିଲେ । ମାତ୍ର କେହୁ ତାଙ୍କୁ ପାଇଲେ ନାହିଁ ।

ଦିନେ ବଣ ଭିତରେ ଗୋଟିଏ କେଉଟ ଜଣେ ବଣୁଆ ଲୋକକୁ ଦେଖି ପଚାରିଲା, "ଭାଇ ! ଚାପଙ୍ଗ ଗଡ଼କୁ କେଉଁ ବାଟେ ଯିବ, ଠିକଏ ବାଟ ବତାଇ ଦେଇ ପାରିବ ? ମୁଁ ବଡ଼ ବିପଦରେ ପଡ଼ିଛି । ଚିଲିକାରେ ନୌକା ଚଳାଇ ମୁଁ ମୋ କୁଟୁମ୍ବ ପୋଷେ । ଗୁରୁ ଦିନ ତଳେ ଚିଲିକା ଗର୍ଭରେ ମୋ ନୌକାଟି ବୁଡ଼ିଗଲା । ମନବ୍ୟଥାରେ ଘରକୁ ଆସି ଦେଖିଲି, ଘର ଖଣ୍ଡ ମଧ୍ୟ ପୋଡ଼ି-ଯାଇଛି । ଏହିପରି ବିପଦରେ ପଡ଼ି ପିଲାମାନେ ମୋର ଭୋକ ଉପାସରେ କଷ୍ଟ ପାଉଛନ୍ତି । ମୋତେ ବୁଦ୍ଧି ବାଟ ଦେଖାଯାଉ ନାହିଁ । ଶୁଣିଛି, ଚାପଙ୍ଗ ଦଳବେହେରା ବଡ଼ ଦାନୀ । କେହି ତାଙ୍କ ପାଖକୁ ଯାଇ ଖାଲି ହାତରେ ଫେରି ନାହାନ୍ତି । ସେ ମୋ ଦୁଃଖ ଶୁଣିଲେ ନିଶ୍ଚୟ ଦୟା କରିବେ ।"

ସବୁ କଥା ଶୁଣିସାରି ବଣୁଆ ଲୋକଟି କହିଲା 'ମୁଁ ଚାପଙ୍ଗ ଗଡ଼କୁ ବାଟ ଦେଖିଛି, ମୋ ସାଙ୍ଗରେ ଆସ, ତୁମକୁ ଯେଉଁଠୁ ଟଙ୍କା ମିଳିବ ସେଠାକୁ ନେଇଯିବି ।"

କେଉଟଟି ସେ ଲୋକର ପଛେ ପଛେ ଯାଇ ଚାପଙ୍ଗ ଗଡ଼ରେ ପହଞ୍ଚିଲା । ଦଳବେହେରା ଏପର୍ଯ୍ୟନ୍ତ ମିଳି ନ ଥିବାରୁ ଇଂରେଜ ହାକିମ ଚିନ୍ତାରେ ବସିଥାନ୍ତି ।

ଏପରି ସମୟରେ ମଇଳା ଛିଣ୍ଡା କନା ପିନ୍ଧିଥିବା ସେହି ବଣୁଆ ଲୋକକୁ ଦେଖି ହାକିମ ପଚାରିଲେ, "କିରେ ! ତୋର ଏଠି କାମ କ'ଣ ? କାହିଁକି ଆସିଛୁ ?"

ସେ ଜଙ୍ଗଲୀ ଲୋକଟି ଧୀର ସ୍ୱରରେ ପଚାରିଲେ, "ଚାପଙ୍ଗ ଦଳବେହେରାଙ୍କୁ ଯେ ଧରି ଆଣିଦେବ, ତାକୁ କେତେ ପୁରସ୍କାର ଦେବାକୁ ଆପଣ ଘୋଷଣା କରିଛନ୍ତି ?"

ହାକିମ କହିଲେ, "ଏକହଜାର ସ୍ୱର୍ଣ୍ଣମୁଦ୍ରା ଦିଆଯିବ ।"

ଏହା ଶୁଣିସାରିବା ପରେ ସେ ଜଙ୍ଗଲୀ ଲୋକଟି କହିଲା, "ଆଜ୍ଞା, ମୁଁ ସେହି ଦଳବେହେରା । ଏ ଗରିବ କେଉଟଟି ମୋତେ



ଧରିଆଣିଛି, ତାକୁ ବଡ଼ ବିପଦ ପଡ଼ିଛି, "ଆଗ ତାକୁ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଦେଇ ପଛେ ମୋର ମୁଣ୍ଡକାଟ କରନ୍ତୁ ।"

ଦଳବେହେରାଙ୍କ ତୁଣ୍ଡରୁ ଏ କଥା ଶୁଣି ଇଂରେଜ ହାକିମଙ୍କ ମୁଣ୍ଡ ତଳକୁ ହୋଇଗଲା ।

## ପ୍ରଶ୍ନ

୧ । ବଣୁଆ ଲୋକଟି କେଉଟକୁ କିପରି ସାହାଯ୍ୟ କରିଥିଲା ?

୨ । ଇଂରେଜ ହାକିମ ଦଳବେହେରାଙ୍କ ମୁଣ୍ଡ ନ କାଟି ତଳକୁ ମୁଣ୍ଡ ପୋତିଲେ କାହିଁକି ?

୩ । ସଜାଇ ଲେଖ:—

(୧) ମୁଁ ଦଳବେହେରା ସେହି ।

(୨) ଅଣିଛି କେଉଟଟି ଗରିବ ମୋତେ ଧରି ।

(୩) ପଡ଼ିଛି ତାକୁ ବିପଦ ବଡ଼ ।

# ଗାଁ ଚୌକିଦାର

ପ୍ରତି ଗାଁରେ କପରି ଶାନ୍ତି ରହିବ, ଲୋକେ ନିଜ ନିଜ ଭିତରେ କଳଗୋଳ କରିବେ ନାହିଁ, ଚୋରି ଡକାୟତି ହେବ ନାହିଁ, ଏଥିପାଇଁ ସରକାର ପୋଲିସ ବିଭାଗ ରଖିଛନ୍ତି । ଦେଶର ଚୋର, ଠକ, ଲାଞ୍ଚୁଆଙ୍କୁ ଧରି ଦଣ୍ଡଦେବା ମଧ୍ୟ ପୋଲିସ୍ ବିଭାଗର କାମ ।



ସବୁ ଗାଁରେ ଜଣେ ଲେଖାଏଁ ଚୌକିଦାର ରଖାହୋଇ-ଥାଏ । ସେ ପୋଲିସ୍ ବିଭାଗର ସବୁଠାରୁ ଛୋଟ ଚାକିରିଆ ଓ କମ୍ ଦରମା ପାଏ । କିନ୍ତୁ ଗାଁର ସବୁ ଭଲ ମନ୍ଦ ଖବର ସେ ରଖେ ।

ଚୌକିଦାର ସରକାରଙ୍କଠାରୁ ଗୋଟିଏ ନେଳିଆ କୋଟ, ମୁଣ୍ଡରେ ବାନ୍ଧିବା ପାଇଁ ନେଳିଆ କନାରେ ତିଆରି ଗୋଟିଏ ପଗଡ଼ି ପାଇଥାଏ ।

ସେ ସବୁରେ ଏଇ ପୋଷାକ ପିନ୍ଧି ହାତରେ ଠେଙ୍ଗା ଓ ଲଣ୍ଠନ ଧରି ଗାଁ ଗୁରିପାଖ ବୁଲୁଥାଏ । ମଝିରେ ମଝିରେ "ହୁସିଆର" ବୋଲି ଖୁବ୍ ପାଟିରେ ଡାକେ ।

ଥାନାକୁ ଗଲାବେଳେ ବା କୌଣସି ହାକିମ ଆସିଲା ବେଳେ ଚୌକିଦାର ତାର ସେଇ ନେଳିଆ ପୋଷାକ ପିନ୍ଧି ଥାଏ ।

ଚୌକିଦାର ଆମର ବହୁତ ଉପକାର କରେ । ଗାଁରେ ଚୋରି, ଡକାଏତି ମାରପିଟ୍ ବା କଳିଗୋଳ ହେଲେ ଚୌକିଦାର ସେ ଖବର ଥାନାରେ ଜଣାଏ । ଥାନାବାବୁ ତା'ଠାରୁ ସବୁ ଘଟଣା ଶୁଣି ଲେଖି ରଖନ୍ତି । ଥାନା ବାବୁଙ୍କଠାରୁ ହୁକୁମ ପାଇଲେ ସେ ଦୋଷୀମାନଙ୍କୁ ନେଇ ଥାନାରେ ହାଜର କରାଏ ।

ପ୍ରତିଥାନାରେ ଜଣେ ଲେଖାଏଁ ମୁନସି ବା ପୋଲିସ୍ ସବ୍-ଇନସ୍‌ପେକ୍ଟର ଥା'ନ୍ତି । କେତେକ ଥାନାରେ ମୁନସିଙ୍କ ତଳେ ଜମାଦାର ମଧ୍ୟ ଥା'ନ୍ତି । ପ୍ରତି ଥାନାରେ କେତେଜଣ କନ୍‌ଷ୍ଟେବଲ ରହନ୍ତି ।

ଚୌକିଦାରଠାରୁ ଖବର ପାଇ ଥାନା ହାକିମ ଦୋଷୀକୁ କଚେରୀକୁ ପଠାଇ ଦିଅନ୍ତି । ଗାଁରେ ଜନ୍ମ ବା ମୃତ୍ୟୁ ହେଲେ ଚୌକିଦାର ତା ବହିରେ ଟିପି ରଖେ । ଥାନା ପାଳିଦିନ ଆସି ଥାନା ବାବୁଙ୍କୁ ତେ ଜଣାଏ । ପରେ ତାହା ଥାନାର ଜନ୍ମ ମୃତ୍ୟୁ ବହିରେ ଲେଖା ହୋଇ ରହେ ।

## ପ୍ରଶ୍ନ

୧ । ଗାଁ ଚୌକିଦାରର କାମ କ'ଣ ?

୨ । ଥାନା କାହିଁକି ଥାଏ ଓ ଥାନାରେ ଥିବା ହାକିମଙ୍କୁ କ'ଣ କୁହାଯାଏ ?

୩ । ସଜାଇ ଠିକ୍ କରି ଲେଖ—

(କ) ଯେ ଟିପି ରଖେ ବହିରେ ତା ଜନ୍ମମୃତ୍ୟୁ ।

(ଖ) ହାଜର ଦୋଷୀଙ୍କୁ ନେଇ କରାଏ ଥାନାରେ ?

---

# ଉପକାର

ଉଏଁ ରବି ଆକାଶରେ ଆଲୋକ ଦେବାକୁ,
କେତେ ରଙ୍ଗେ ଗଛେ ଫୁଲ ଆମ ପାଇଁ ଫୁଟେ ।
କି ସୁନ୍ଦର ଫଳ ପାଚି ଡାଳେ ଦୋହଲଇ
ଗଛ ତ ନ ଖାଏ, ସବୁ ଧରେ ଆମ ପାଇଁ ।
ରାତିରେ ନିର୍ମଳ ଚନ୍ଦ୍ର ଆକାଶୁ କିରଣ
ଢାଳି କରେ ନରନାରୀ ମାନସ ହରଣ ।
ନାନା କଷ୍ଟ ସହେ ଧରି ପରହିତ ପାଇଁ,
ଯଥା କାଳେ ଦିଏ ଖାଦ୍ୟ ଯତନେ ଯୋଗାଇ ।
ସଞ୍ଚେ ମଧୁ ମହୁମାଛି, ଧାଏଁ ପରହିତେ,
ତାହା ପରି ଉପକାରୀ କେ ଅଛି ଜଗତେ ।
ଭୁଲି ଆପଣାକୁ କରେ ପର ଉପକାର,
ପର ପାଇଁ ଢାଳିଦିଏ ଜୀବନ ତାହାର ।

## ପ୍ରଶ୍ନ

୧ । କିଏ କିଏ ଆମର ଉପକାର କରନ୍ତି ବୋଲି ତୁମେ ପଦ୍ୟରୁ ପଢ଼ିଲ ?

୨ । ମାନସ, ମଧୁ, ଉପକାରୀ, ପରହିତ, ଜଗତ—ଏହି ଶବ୍ଦ-ଗୁଡ଼ିକର ଅର୍ଥ ଲେଖ ।

୩ । ଶେଷ ପଦଟିର ସାରକଥା କହ ?

---

# କୋଣାର୍କ କାରିଗର

ଆମ ଓଡ଼ିଶାର ରାଜା ଲାଙ୍ଗୁଲା ନରସିଂହ ଦେବ କୋଣାର୍କ ମନ୍ଦିର ତୋଳାଇଥିଲେ । ସେ ଦେଉଳ ଦେହରେ ଯେଉଁ ସବୁ କାମ ହୋଇଛି, ତାକୁ ଦେଖିଲେ ଛାଡ଼ିକରି ଆସିବାକୁ ମନ ହୁଏ ନାହିଁ । ସେ କାଳର ଓଡ଼ିଆ କାରିଗର ଛୁଆମାନେ ପରି ସରୁ ହତିଆର ଧରି ପଥର ଦେହରେ କପରି ଏତେ ସୁନ୍ଦର ସୁନ୍ଦର କାମ କରିପାରୁଥିଲେ ତାହା ଆଜି ଭାବି ହେଉନାହିଁ ।

କୋଣାର୍କ ମନ୍ଦିର ତୋଳା ହେବାର ଅନେକ ଦିନ ହୋଇ ଗଲାଣି । ଦେଉଳ ଦେହରେ ଯେଉଁ ମୂର୍ତ୍ତିଗୁଡ଼ିକ ଖୋଳାହୋଇଛି ସେଗୁଡ଼ିକ ଏବେ ମଧ୍ୟ ଜୀଅନ୍ତା ମୂର୍ତ୍ତିପରି ରହିଅଛି । ଲତା, ଫୁଲ କଢ଼ି ପ୍ରଭୃତି ଅତି ସୁନ୍ଦର ଦେଖାଯାଏ ।

ସେହି କୋଣାର୍କ ଦେଉଳ ତୋଳାବେଳର କଥା । ବାର-ଶହ କାରିଗର ଦିନରାତି କାମରେ ଲାଗିଛନ୍ତି । ତା ମଧ୍ୟରୁ ଗୋଟିଏ

କାରିଗର ଖୁବ୍ ଶୀଘ୍ର ଅତି ସୁନ୍ଦର ସୁନ୍ଦର ମୂର୍ତ୍ତି ଗଢ଼ୁଥାଏ । ନିଜେ ରାଜା ନରସିଂହ କାମ ଦେଖିବା ପାଇଁ କୋଣାର୍କରେ ଥାଆନ୍ତି ।



ସେହି କାରିଗରଟି କାମ କରୁଥିଲା ବେଳେ କାହାର ଆଡ଼କୁ ନ ଚାହିଁ ଏକଲୟରେ କାମ କରୁଥାଏ । ତାର ବହୁତ ପାନଖାଇବା ଅଭ୍ୟାସ । ସେଥିପାଇଁ ସେ କାମ କରୁଥିବା ବେଳେ ପାନ ଦରକାର ପଡ଼ିଲେ ବଡ଼ ପାଟିରେ 'ପାନ' ବୋଲି ଡାକଦିଏ । ପାଖଲୋକେ

ତା ପାଟି ଶୁଣି ପାନ ଖଣ୍ଡିଏ ତା ହାତରେ ଦେଇଦେଲେ ସେ ପୁଣି କାମରେ ଲଗେ।

ଧନଙ୍କର ଘଟଣା—ରାଜା ନିଜେ କାରିଗରର ପଛରେ ରହି କାମ ଦେଖୁଛନ୍ତି। କାରିଗର କାହାକୁ ନ ଚାହିଁ କାମ କରିବାରେ ଲାଗିଛି। ମଝିରେ ଡ଼ାକିଲା, 'ପାନ'। ରାଜା ନିଜେ ପାନ ଡବାରୁ ଖଣ୍ଡିଏ ପାନ ବାହାର କରି ତା ହାତରେ ଗୁଞ୍ଜିଦେଲେ। ରାଜା ଛିଡ଼ା ହୋଇଥିବା ଦେଖି ଆଉ କେହି ପାନ ଦେବାକୁ ଆସିଲେ ନାହିଁ। କାରିଗର କୁଆଡ଼କୁ ନ ଚାହିଁ ପାନଖଣ୍ଡି ପାଇ କାମରେ ଲାଗିଲା।

ଏହିପରି ଧନପାକ ଥରକୁଥର ପାନ ମାଗି ସେ ରାଜାଙ୍କ ହାତରୁ କେତେ ଖଣ୍ଡ ପାନ ଖାଇଛି; ମାତ୍ର ରାଜା ତାକୁ ପାନ ବଢ଼ାଇ ଦେବା କଥା ସେ ଆଦୌ ଜାଣେ ନାହିଁ।

କାମ କରୁ କରୁ ହଠାତ୍ କାରିଗରର ନିହଣଟା ହାତରୁ ଖସିଯାଇ ତଳେ ପଡ଼ିଗଲା। ହାତଆରଟି ଉଠାଇ ଆଣିବାକୁ ଯାଇ ଦେଖିଲା; ନିଜେ ମହାରାଜା ତା ପଛପଟେ ଛିଡ଼ା ହୋଇଛନ୍ତି। ନିଜେ ମହାରାଜା ତାକୁ ପାନ ବଢ଼ାଇ ଦେଉଛନ୍ତି ଭାବି ସେ ଭୟରେ ଥରହରା ପତ୍ର ପରି ଥରିଲା, ଲମ୍ବ ହୋଇ ମହାରାଜାଙ୍କ ପାଦତଳେ ପଡ଼ି ଦୋଷ କ୍ଷମା କରିବା ପାଇଁ ପ୍ରାର୍ଥନା କଲା।

ରାଜା ତାକୁ ଆଦରରେ ତଳୁ ଉଠାଇ କହିଲେ, "କିଛି ଭୟ କରନାହିଁ। କିଛି ଦୋଷ ନ କରି ଏତେ ଡରୁଛ କାହିଁକି? ମୁଁ ତୁମ କାମ ଦେଖି ଖୁବ୍ ସନ୍ତୁଷ୍ଟ ହୋଇଛି। ତୁମର ହାତର କାମ ଯୋଗୁଁ କୋଣାର୍କ ମନ୍ଦିର ପୃଥିବୀରେ ଆଦର ପାଇବ। ଓଡ଼ିଆ କାରିଗରର କାମ ଦେଖିବା ପାଇଁ ପୃଥିବୀର ଚାରିଆଡ଼ୁ ଲୋକେ ଏଠାକୁ ଆସିବେ। ଯେତେଦିନ ପର୍ଯ୍ୟନ୍ତ କୋଣାର୍କ ଦେଉଳ ଥିବ, ସେତେଦିନ ପର୍ଯ୍ୟନ୍ତ ସମସ୍ତେ ଓଡ଼ିଆ ଜାତିକୁ ପ୍ରଶଂସା କରୁଥିବେ।"

## ପ୍ରଶ୍ନ

୧ । କୋଣାର୍କ ମନ୍ଦିର କିଏ ତୋଳାଇ ଥିଲେ ?
୨ । କୋଣାର୍କର କାରିଗର ରାଜାଙ୍କଠାରୁ କପରି ଭାବରେ ପାନ ଖାଉଥିଲା, କହ ।
୩ । ଜୀଅନ୍ତା, ପ୍ରଶଂସା, ପ୍ରାର୍ଥନା, କ୍ଷମା, ମୂର୍ତ୍ତି—ଏହି ଶବ୍ଦଗୁଡ଼ିକ ଲଗାଇ ବାକ୍ୟ ରଚନା କର ।

---

# ଯନ୍ତ୍ର କଥା କହେ

ଦିନେ ଲକ୍ଷ୍ମୀକାନ୍ତ ତା ବାପାଙ୍କ ସଙ୍ଗରେ କଟକ ସହରକୁ ବୁଲି ଆସିଥିଲା । ସେ ସହରର କୋଠାବାଡ଼ି, ରେଳ, ମୋଟର, ରିକ୍ସାଗାଡ଼ି ଓ କଳକାରଖାନା ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଗାଁରେ ସେସବୁ କେବେ ଦେଖି ନ ଥିଲା ।

ଲକ୍ଷ୍ମୀକାନ୍ତର ବାପାଙ୍କ ବସାଘର ଠିକ୍ ସଦର ରାସ୍ତାପାଖରେ । ସେ ସବୁବେଳେ ଗାଡ଼ି, ଘୋଡ଼ା ପ୍ରଭୃତି ଦେଖିବା ପାଇଁ ଘରୁ ବାହାରକୁ ଚାଲିଯାଉଥିଲା । ବସାରେ ବସି ରହିବାକୁ ତାକୁ ଆଦୌ ଭଲ ଲାଗୁ ନଥିଲା । ତା ବାପା ଗୋଟିଏ ଅଫିସରେ କାମ କରନ୍ତି । ଦିନେ ଲକ୍ଷ୍ମୀକାନ୍ତ ତାଙ୍କ ସଙ୍ଗରେ ଅଫିସକୁ ଗଲା । ବାପା ଅଫିସରେ ବସି କାମ କରୁଛନ୍ତି, ଏହି ସମୟରେ ଟେବୁଲ ଉପରେ ଥିବା ଗୋଟିଏ ଯନ୍ତ୍ର ହଠାତ୍ ଟିନ୍ ଟିନ୍ ହୋଇ ବାଜି ଉଠିଲା । ସେ ଯନ୍ତ୍ରଟିକୁ ଟେକି ନେଇ ଗୋଟିଏ ପାଖ କାନ ପାଖରେ ଓ ଆର ପାଖଟି ମୁହଁପାଖରେ ରଖି ଧରିଲେ । ବାପା କ'ଣ କହୁଥାନ୍ତି; ଲକ୍ଷ୍ମୀକାନ୍ତ ଏହା ଦେଖି

ଆଶ୍ଚର୍ଯ୍ୟ ହୋଇଗଲେ । ବାପା ତ ଏକୁଟିଆ ଏଠାରେ ବସି ଅଛନ୍ତି, ମୋ ଛଡ଼ା ଏ ଘରେ ଆଉ କେହି ନାହାନ୍ତି ! କାହାକୁ କ'ଣ କହୁ ଅଛନ୍ତି ! ସେ କହିଲା, "ବାପା, ତୁମେ କାହାକୁ କ'ଣ କହୁଛ ?" ସେ କିଛି ଉତ୍ତର ନ ଦେଇ ଚୁପ୍ ରହିବାକୁ ଠାରିଦେଲେ ।

କିଛି ସମୟ ପରେ ବାପା ଯନ୍ତ୍ରଟିକୁ ପୁଣି ମେଜ ଉପରେ ରଖିଦେଲେ । ତାପରେ କହିଲେ,ଲକ୍ଷ୍ମୀକାନ୍ତ, ମୁଁ ତୋ କକେଇଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଥିଲି । ସେ କହୁଛନ୍ତି ଯେ ଆଜି ସନ୍ଧ୍ୟା ବେଳକୁ ଏଠାକୁ ଆସିବେ । ଲକ୍ଷ୍ମୀକାନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କକେଇ ତ ଭୁବନେଶ୍ୱରରେ, ଏଠାରୁ ଭୁବନେଶ୍ୱର ଦଶ କୋଶ ହେବ ବୋଲି ଶିକ୍ଷକଙ୍କଠାରୁ ଶୁଣିଥିଲି, ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ କପରି ?"

ବାପା କହିଲେ, "ଏହି ଯେଉଁ ଟେଲିଫୋନ ଯନ୍ତ୍ର ଦେଖିଥିଲି, ସେଥିରେ କକେଇଙ୍କ ସହିତ କଥାବାର୍ତ୍ତା ହେଉଥିଲି । ଏହି ଯନ୍ତ୍ର ଦ୍ୱାରା ଖାଲି ଭୁବନେଶ୍ୱର କ'ଣ ଭାରତବର୍ଷର ସବୁ ବଡ଼ ସହରରେ ଥିବା କୌଣସି ଲୋକ ସହିତ କଥାବାର୍ତ୍ତା କରିହେବ ।" ଲକ୍ଷ୍ମୀକାନ୍ତ ଏ କଥା ସତ ମଣିଲା ନାହିଁ । ସେ କହିଲା, "ତେବେ ମୁଁ ଟିକିଏ କକେଇଙ୍କ ସଙ୍ଗେ କଥାବାର୍ତ୍ତା ହୁଅନ୍ତି ।" ବାପା ପୁଣି ଯନ୍ତ୍ରଟି ଆଣି କାହାକୁ କିଛି କହିଲା ପରେ ଲକ୍ଷ୍ମୀକାନ୍ତ ହାତରେ ଦେଲେ ଓ କହିଲେ, ଏହି ଯନ୍ତ୍ରଟିର ଗୋଟିଏ ପାଖ କାନ ପାଖରେ ଓ ଆର ପାଖଟି ମୁହଁ ପାଖରେ ରଖି ଧର । କକେଇ ଭୁବନେଶ୍ୱରରେ ରହି ତୋ କଥା ଶୁଣିବେ ଓ ତୋ ସଙ୍ଗେ କଥାବାର୍ତ୍ତା ହେବେ ।" ଲକ୍ଷ୍ମୀକାନ୍ତ କହିଲା, "କକେଇ ! ନମସ୍କାର ।" ସଙ୍ଗେ ସଙ୍ଗେ ସେ ଶୁଣିବାକୁ ପାଇଲା "ଲକ୍ଷ୍ମୀକାନ୍ତ ! ତୁ କଟକ ଆସିଥିବା ଖବର ଶୁଣି ମୁଁ ଖୁସିହେଲି । ଆଜି

ସନ୍ଧ୍ୟାରେ ଠିକ ବସାରେ ପହଞ୍ଚିବ ।" ଲକ୍ଷ୍ମୀକାନ୍ତ ଏହାପରେ କକେଇଙ୍କ ସାଙ୍ଗରେ କେତେ ସମୟ ଯାଏଁ କଥାବାର୍ତ୍ତା ହେଲେ ଓ ତାପରେ ଯନ୍ତ୍ରଟି ମେଜ ଉପରେ ରଖିଦେଲେ ।



ଲକ୍ଷ୍ମୀକାନ୍ତ କକେଇଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ ସତ, କିନ୍ତୁ ଏପରି ଅସମ୍ଭବ କଥା କିପରି ସମ୍ଭବ ହେଲା ସେ ବୁଝିପାରୁ ନ ଥାଏ । ସେ ବାପାଙ୍କୁ ପଚାରି ପଚାରି ଅଥୟ କଲା—ବାପା ! ଏ ଯନ୍ତ୍ର କିଏ କଲା ? କିପରି କଲା ? ଇତ୍ୟାଦି

ବାପା କହିଲେ, "ଏହି ଟେଲିଫୋନ୍ ଯନ୍ତ୍ର ସ୍କଟଲାଣ୍ଡ ଦେଶର ଜଣେ ସାହେବ ବାହାର କରିଥିଲେ । ତାଙ୍କର ନାମ ଗ୍ରାହାମ-ବେଲ । ପିଲଟି ଦିନୁ ସେ ଭାରି ବୁଦ୍ଧିମାନ୍ ଥିଲେ ଓ ମନଦେଇ ପାଠ ପଢୁଥିଲେ । କିପରି ନୂଆ ନୂଆ ଜିନିଷ ତିଆରି କରିବେ, ସେ ସବୁବେଳେ ସେହି କଥା ଭାବୁଥାଆନ୍ତି ।

ଘରେ ବସି ଦୂରରେ ଥିବା ବନ୍ଧୁମାନଙ୍କ ସହିତ କିପରି କଥାବାର୍ତ୍ତା କରିବେ, ଏହି କଥା ସେ ଭାବିଲେ । ମନୁଷ୍ୟର କାନକୁ ପରୀକ୍ଷା କରି ଦେଖିଲେ ଯେ, ସେଥିରେ ଗୋଟିଏ ଅତି ପାତଳ ପରଦା ଅଛି । ବାହାରେ କୌଣସି ଶବ୍ଦ ହେଲେ ପବନ ଥରି ଉଠି ଏହି ପରଦାରେ ବାଜେ; ତେଣୁ ଲୋକେ ଶୁଣି ପାରନ୍ତି । ସେ ଅତି ପତଳା ଇସ୍ପାତ ପଟ ଦୁଇ ଖଣ୍ଡ ଆଣି ଗୋଟିଏ ଲମ୍ବା ତାରର ଦୁଇ ମୁଣ୍ଡରେ ଗୋଟିଏ ଗୋଟିଏ ବାନ୍ଧିଦେଲେ । ଗୋଟିଏ ମୁଣ୍ଡରେ ତାଙ୍କର ଜଣେ ବନ୍ଧୁ ବସିଲେ । ସେ ଯେତେବେଳେ ଏ ମୁଣ୍ଡରେ କିଛି ଶବ୍ଦ କଲେ, ଠିକ୍ ସେହିପରି ଶବ୍ଦ ଆର ମୁଣ୍ଡରେ ଶୁଣାଗଲା । ଏହିପରି ଟେଲିଫୋନ୍ ଯନ୍ତ୍ରଟି ଜନ୍ମ ହେଲା । ପ୍ରଥମେ ଏହି ଯନ୍ତ୍ରରେ ଖୁବ୍ ବେଶୀ ଦୂରକୁ ଶବ୍ଦ ଯାଇପାରୁ ନଥିଲା । ବେଲ୍ ବହୁତ ଚେଷ୍ଟା କରି ଯନ୍ତ୍ରର ଉନ୍ନତି କଲେ । ଆଜିକାଲି ସମୁଦ୍ର ଆରପାରିରେ ଥିବା ରାଜ୍ୟ ସହିତ ମଧ୍ୟ ଟେଲିଫୋନ୍‌ରେ କଥାବାର୍ତ୍ତା କରି ହେଉଛି ।"

ଲକ୍ଷ୍ମୀକାନ୍ତ କହିଲା, "ବାପା, ଟେଲିଫୋନ୍ ଯନ୍ତ୍ର ଯୋଗେ ବଡ଼ ସୁବିଧା ହୋଇଅଛି । ମୁଁ କକେଇଙ୍କ ସଙ୍ଗେ ଘରେ ଥିଲା ପରି କଥାବାର୍ତ୍ତା ହେଲି । ଆଚ୍ଛା, ଏଠାରେ ବସି ଭୁବନେଶ୍ୱରରୁ କକେଇଙ୍କୁ ଦେଖିବା ଭଳି ଯନ୍ତ୍ର କିଛି ନାହିଁ ?"

ବାପା କହିଲେ, "ହଁ, ଏପରି ଯନ୍ତ୍ର ଅଛି । କିନ୍ତୁ ସେ ଯନ୍ତ୍ର କଟକରେ ନାହିଁ । ବିଲାତରେ ଏପରି ଯନ୍ତ୍ର ହେଲାଣି । ଆଉ କେତେ ବର୍ଷ ପରେ ହୁଏତ ଏଠାକୁ ଆସିବ । ତାର ନାମ ଟେଲିଭିଜନ୍ । ଏହି ଟେଲିଭିଜନ୍ ଯନ୍ତ୍ର ସାହାଯ୍ୟରେ ତୁ ଏହିଠାରେ ବସି ନାନା ସ୍ଥାନର ଲୋକଙ୍କୁ ଦେଖିପାରିବୁ ।

## ପ୍ରଶ୍ନ

୧ । ଲକ୍ଷ୍ମୀକାନ୍ତ କେଉଁ ଯନ୍ତ୍ର ସାହାଯ୍ୟରେ ଡାକ୍ତରଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲେ ?

୨ । ଟେଲିଫୋନ୍ ଯନ୍ତ୍ର କିଏ ଆବିଷ୍କାର କରିଥିଲେ ? ତାଙ୍କ ବିଷୟରେ ଯାହା ଜାଣ କହ ।

୩ । ଶୂନ୍ୟସ୍ଥାନ ପୂରଣ କର:—

ଲକ୍ଷ୍ମୀକାନ୍ତ କହିଲେ, "ବାପା,—ଯନ୍ତ୍ର ଯୋଗେ ବଡ଼—ହୋଇଛୁ ।" ବାପା କହିଲେ, "ହଁ, ଏପରି—ଅଛି, କିନ୍ତୁ ସେ ଯନ୍ତ୍ର—ନାହିଁ ।—ଏପରି ଯନ୍ତ୍ର ହେଲଣି । ଆଉ କେତେ—ପରେ ହୁଏ ତ ଏଠାକୁ ଆସିବ ।"



# କାହାରିକୁ ହିଂସା କର ନାହିଁ

ବିନାୟକପୁର ଗାଁରେ ଗୋଟିଏ ଦରିଦ୍ର ବ୍ରାହ୍ମଣ ଓ ତାର ସ୍ତ୍ରୀ ଅତି ଦୁଃଖରେ ରହୁଥା'ନ୍ତି । ପିଲାଛୁଆ ଗୋଟିଏ ଥିଲେ ଅବା ବୁଢ଼ା ଦିନକୁ ସାହା ହୋଇଥାଆନ୍ତେ, ତା ବି ନାହିଁ ।

ସ୍ୱାମୀ ସ୍ତ୍ରୀ ଦୁହିଁଙ୍କି ବୁଢ଼ା ହୋଇଗଲେ । ଆଉ ପେଟ ପୋଷି ନ ପାରି ଅନେକ ଦିନ ଉପବାସରେ କଟାଇଲେ । ବୁଢ଼ା ବ୍ରାହ୍ମଣଟି ଆଉ କିଛି ଉପାୟ ନ ପାଇ ମହାଦେବ ବିଶ୍ୱନାଥଙ୍କ ପାଖରେ ଗୁହାରିଆ ପଡ଼ିଲେ ।

ଦିନେ ଗୁଡ଼େ, ଦୁଇ ଦିନ ଗୁଡ଼େ, କ୍ରମେ ସାତ ଦିନ କଟିଗଲା । ବୁଢ଼ା ନ ଖାଇ ନ ପିଇ ଖାଲି ମହାଦେବଙ୍କୁ ଡାକୁଥାଏ ।

ବିଶ୍ୱନାଥଙ୍କର ଭାରି ମହିମା । ସେ ବୁଢ଼ା ବ୍ରାହ୍ମଣର କଷ୍ଟ ଆଉ ସହିପାରିଲେ ନାହିଁ । ଦିନେ ରାତିରେ ବ୍ରାହ୍ମଣକୁ ସ୍ୱପ୍ନରେ କହିଲେ, "ଯା, ବୃଷଭ ପାଖରେ ଯେଉଁ ବଂଶୀଟି ଅଛି ତାକୁ ନେ । ସେ ବଂଶୀଟି ବଜାଇଲେ ତୋର ଯେତେ ଧନ ସମ୍ପତ୍ତି ହେବ, ତୋ ପଡ଼ୋଶୀଙ୍କର ତା'ର ଦୁଇଗୁଣ ହେବ । ମାତ୍ର ତୁ ସେମାନଙ୍କ ପ୍ରତି କେବେ ହିଂସା କରିବୁ ନାହିଁ ହିଂସା କଲେ ତୋ ସମ୍ପତ୍ତି ରହିବ ନାହିଁ କି ବଂଶୀ ବାଜିବ ନାହିଁ ।" ଏହା କହି ମହାଦେବ କୁଆଡ଼େ ଲୁଚିଗଲେ । ଗୃଉଁ କରି ବ୍ରାହ୍ମଣର ନିଦ ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ବୃଷଭ ପାଖକୁ ଯାଇ ଦି ହାତରେ ଦରାଣ୍ଡି ଦେଖିଲା ଯେ ସତକୁ ସତ ଗୋଟିଏ ବଂଶୀ ଥୁଆ ହୋଇଅଛି । ଆନନ୍ଦରେ ବଂଶୀଟିକୁ ଧରି ରାତି ନ ପାହୁଁ ଦେଉଳରୁ ବାହାରି ଆସିଲା ।

ସକାଳୁ ଘରେ ପହଞ୍ଚି ବ୍ରାହ୍ମଣୀକୁ ସବୁକଥା କହିଲା । ଏଥର ବ୍ରାହ୍ମଣୀର ଆନନ୍ଦ କହିଲେ ନ ସରେ । ବ୍ରାହ୍ମଣୀ ସଙ୍ଗେ ସଙ୍ଗେ 'ମୋର କୋଠାବାଡ଼ି, ଟଙ୍କା ସୁନା ବହୁତ ହୋଇଯାଉ' କହି ବଂଶୀଟି ବଜାଇଲା । ବଂଶୀ ବାଜିବାମାତ୍ରେ ତାର ଯେତିକି ଯାହା ହେଲା ପଡ଼ୋଶୀମାନଙ୍କର ତା'ର ଦୁଇଗୁଣ ହେଲା ।

ବୁଢ଼ୀ ପଡ଼ୋଶୀମାନଙ୍କ ଘରକୁ ଯାଇ ଏସବୁ ଦେଖି ମନେ ମନେ ବଡ଼ ବିରକ୍ତ ହେଉଥାଏ । କିଛି ଦିନ ପରେ ସେ ପୁଣି 'ମୋର ହାତୀ, ଘୋଡ଼ା, ଖଟ, ଚଉପ, ଯାନ, ବାହାନ ବହୁତ ହୋଇଯାଉ' କହି ବଂଶୀଟି ବଜାଇଲା । ଏଥର ମଧ୍ୟ ବୁଢ଼ୀର ଯାହା ହେଲା, ପୋଡ଼ଶୀମାନଙ୍କର ତା'ର ଦୁଇଗୁଣ ହେଲା ।

ବୁଢ଼ୀ ଏସବୁ ଦେଖି ଅବେଗୀ ସହି ପାରିଲା ନାହିଁ । ମନେ ମନେ ଠିକ୍ କଲା—ଅଚ୍ଛା, ମୁଁ ଯଦି "ଆମର ଗୋଟିଏ ଆଖି ଫୁଟି-

ଯାଉ"କହି ବଂଶୀ ବଜାଇବ ତେବେ ତ ପଡ଼ୋଶୀମାନଙ୍କର ଦୁଇଟି ଯାକ ଆଖି ଫୁଟିଯିବ । ତାହାହେଲେ ପଡ଼ଶାଘରୁ ସବୁ ଧନ ସମ୍ପତ୍ତି ଆଣି ମୁଁ ମୋ ଘରେ ରଖି ଖୁବ୍ ବଡ଼ଲୋକ ହୋଇଯିବ ।

ଦିନେ ଏପରି ଭାବ ବୁଢ଼ୀ ବ୍ରାହ୍ମଣଙ୍କୁ କିଛି ନ କହି ସେ ବଂଶୀଟି ବଜାଇଦେଲା । ସଙ୍ଗେ ସଙ୍ଗେ ବୁଢ଼ା ବୁଢ଼ୀର ଗୋଟିଏ ଗୋଟିଏ ଆଖି ଫୁଟିଗଲା । ପଡ଼ୋଶୀମାନେ ସମସ୍ତେ ଅନ୍ଧ ହୋଇ-ଗଲେ । ବୁଢ଼ୀ ଧାଇପଡ଼ଶାଙ୍କ ଘରେ ପଶି ସମସ୍ତଙ୍କ ଧନ ସମ୍ପତ୍ତି ବହି ଆଣି ନିଜଘରେ ଜମାକରି ରଖିଲା ।

ବୁଢ଼ାବ୍ରାହ୍ମଣ ସ୍ତ୍ରୀଠାରୁ ଏସବୁ କଥା ଶୁଣି ଭାରି ବ୍ୟସ୍ତ ହୋଇ କହିଲା, "ଶୁଣ୍, ମୋତେ ମହାଦେବ କହିଥିଲେ, "କାହା ପ୍ରତି ହିଂସା କରିବୁ ନାହିଁ ।" ମୁଁ ଏକଥା ତୋତେ ଅନେକ ଥର



କହିଛି । ତୁ ମୋ କଥା ଆଦୌ ଶୁଣିଲୁ ନାହିଁ । ଆମର ଧନ ସମ୍ପତ୍ତି ରହି ପାରିବ ନାହିଁ । ଆମେ ପୂର୍ବଠାରୁ ଅଧିକ ଦୁଃଖ ପାଇବା ଓ ଖାଇବାକୁ ନପାଇ ମରିବା ।"

ବୁଢ଼ା କଥା ସତ ହେଲା । ଦିନେ ମଧୁପୁର ଗଡ଼ରୁ ଦଳେ ଡକାୟତ ଆସି ବ୍ରାହ୍ମଣଘରେ ପଶି ସବୁ ଜିନିଷ ଲୁଟିନେଇ ନେଲେ । ପଡ଼ୋଶୀମାନେ ତ ସମସ୍ତେ ଅନ୍ଧ । ଡକାୟତଙ୍କୁ ରୋକୁଛି କିଏ ?

ବୁଢ଼ା ବୁଢ଼ୀ ଦୁହେଁ ଶେଷରେ ଦୁଃଖ କରି କରି ମଲେ । ବଂଶୀକୁ ଯେତେ ବଜାଇଲେ ସେ ଆଉ ବାଜିଲା ନାହିଁ । ହିଂସା କରିବାର ଫଳ ମିଳିଲା ।

## ପ୍ରଶ୍ନ

୧ । ବୁଢ଼ା ବ୍ରାହ୍ମଣ କିପରି ବଡ଼ ଲୋକ ହେଲା ?

୨ । ସେ ପୁଣି ଗରିବ ହେବାର କାରଣ କ'ଣ ? ସେ କିପରି ବଂଶୀ ବଜାଉଥିଲେ ସବୁଦିନେ ସୁଖରେ ରହିଥାନ୍ତା ?

୩ । ରୋକିବ; ଶୀର, ହିଂସା, ଦରିଦ୍ର, ବୃଷଭ, ଶବ୍ଦମାନ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---

## ନଈବଢ଼ି

ଆସିଲା ବଢ଼ି ପାଣି ପୂରିଲା ନଈ,
ଠାଅକୁ ଠାଅ ମେଳା ହୋଇଲା ଯାଇ ।
ବହିଲା ପାଣି-ସୁଅ ଗାଆଁ ଦାଣ୍ଡରେ,
ସବୁରି ପ୍ରାଣ ବଢିଭୟରେ ଥରେ ।
ଭାଙ୍ଗିଲା ଘରଦ୍ୱାର ବୁଡ଼ିଲା ବିଲ,
ମଣିଷ ଗୋରୁ ଗାଈ କି କଲବଲ !

ବନ୍ଧରେ ନଈଦାଢ଼େ କେ ବାଛେ ସ୍ଥାନ,
ଗଛରେ ଚଢ଼ି କେହୁ କାଟେଇ ଦିନ ।
କଏ ସଡ଼କ ପରେ ହୋଇଛି ଠିଆ,
ମୁଣ୍ଡ ଗୁଞ୍ଜିବା ପାଇଁ ନ ଦିଶେ ଜାଗା । ୧ ।
ସୁଅରେ ଭାସିଗଲା ଥିଲା ଯା' ଘରେ,
ଉପାସେ ପଡ଼ି ନୀର ନୟନୁ ଝରେ ।
ବନ୍ଧ ଗୁଳିଛି ବୋଲେ କି ପାଣିସୁଅ !
ଗଲଣି ସବୁ ଧୋଇ ନ ସହେ ଦେହ । ୨ ।
ବରଷକୁ ବରଷ ଏ ନଈବଢ଼ି
ଧୋଇଆଣି ମୂଲକକୁ ଦିଏ ଉଜାଡ଼ି ।
ଯାଉଛି ବୋଲେ ମାଡ଼ି ବାଲି ବହୁତ ।
ଆଉ କି ଏ ବରଷ ହୋଇବ କ୍ଷେତ ?
ପ୍ରତି ବରଷ ହୋଇ ବଢ଼ି ଭିଗାର
ଓଡ଼ିଶା ବଳ ଆମ ନେଲଣି ସାରି ।
ହୀରାକୁଦରେ ସତେ ପଡ଼ିବ ବନ୍ଧ,
ଘରଭଙ୍ଗା ବିପତ୍ତି ହୋଇବ ବନ୍ଦ,
ସତେ କି ଏ ବଢ଼ିର କମିବ ଦାଉ,
ଏ ଦେଶ ସୌଭାଗ୍ୟ କି ଫେରିବ ଆଉ !

## ପ୍ରଶ୍ନ

୧ । ନଈବଢ଼ି ଦ୍ୱାରା କି କ୍ଷତି ହୁଏ ?

୨ । ଓଡ଼ିଶାରେ ନଈବଢ଼ିରୁ ରକ୍ଷାପାଇବା ପାଇଁ କି ବ୍ୟବସ୍ଥା କରାଯାଉ ଅଛି ?

୭। ନା ଧନେଶ ଗ୍ରନ୍ଥା, ନ ସନ୍ଦେହ ଦେହ, ଧୋଇଥା ମୂଲକ, ଧଏ ଉଜାଡ଼ ସୌଭାଗ୍ୟ ଫେରିବା—ଏ ଶବ୍ଦଗୁଡ଼ିକ ପଢ଼ି କ'ଣ ବୁଝିଲ ?

---

# ବାଳିକାର ସାହସ

ଇଂଲଣ୍ଡ ଦେଶରେ ଗୋଟିଏ ମଫସଲ ଗ୍ରାମରେ ଜଣେ ଦରିଦ୍ର ସ୍ତ୍ରୀ ଲୋକ ଥିଲା । ତା'ର ଗୋଟିଏ ମାତ୍ର ଝିଅ ଛଡ଼ା ଆଉ କେହି ନ ଥିଲେ । ସେହି ଗ୍ରାମ ନିକଟରେ ନଈଟିଏ ଥାଏ । ସେଇ ନଈ ଉପରେ ଗୋଟିଏ ପୋଲ ବନ୍ଧା ହୋଇ ରେଲରାସ୍ତା ପଡ଼ିଥାଏ । ସେହି ବାଟେ ସବୁଦିନେ ରେଲଗାଡ଼ି ଯିବାଆସିବା କରେ ।

ଦିନେ ରାତିରେ ବହୁତ ପରିମାଣରେ ବରଫ ପଡ଼ି ପୋଲଟି ଭାଙ୍ଗି ଗଲା । ବାଳିକାଟି ନଈଆଡ଼େ ଯାଇ ଦେଖିଲା ଯେ, ପୋଲଟି ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଛି । ରେଲଗାଡ଼ି ଆସିବାର ଆଉ ଅଳ୍ପ ସମୟ ଅଛି । ଗାଡ଼ି ସେ ବାଟେ ଗଲେ ନଈ ଭିତରେ ଗଳି ପଡ଼ିବ ଓ ଅନେକ ଲୋକ ମରିଯିବେ, ଏ କଥା ଭାବି ବାଳିକାଟି ଶୀଘ୍ର ମା ପାଖକୁ ଯାଇ ତରତର ହୋଇ ସବୁ ଘଟଣା କହିଗଲା । ମାଆ-ଝିଅ ଦୁହେଁ ଆଉ ଡେରି ନ କରି ତାଙ୍କ କୁଡ଼ିଆ ଭିତରେ ଥିବା ଏକମାତ୍ର ଖଟ ଓ ଚୌକିକୁ ଭାଙ୍ଗି ପୋଲ ପାଖକୁ ବହିନେଇ ତହିଁରେ ନିଆଁ ଲଗାଇ ଦେଲେ । ବାଳିକାଟି ତାହାର ନାଲିଆ ଜାମାଟିକୁ ଗୋଟିଏ ବାଡ଼ି ଅଗରେ ବାନ୍ଧି ହଲାଇଲା ଏବଂ ମା' ଖଣ୍ଡିଏ ଜଳନ୍ତା କାଠକୁ ଉପରକୁ ଟେକି ହଲାଇଲା ।

ଅଳ୍ପ ସମୟ ପରେ ଖୁବ୍ ବେଗରେ ରେଲଗାଡ଼ି ଆସିଲା । ସେତେବେଳକୁ ମା' ଜଳନ୍ତା କାଠ ଓ ହିଅ ନାଲି ଜାମା ହଲାଉଥାନ୍ତି ।



ଇଞ୍ଜିନ୍‌ଚାଳକ ଆଗରେ ଏ ବିପଦ ସଙ୍କେତମାନ ଦେଖି ହଠାତ୍ ଗାଡ଼ି ବନ୍ଦକରିଦେଲେ । ଗାଡ଼ି ରହିବା ପରେ ଯାତ୍ରୀମାନେ ଗାଡ଼ିରୁ ଓହ୍ଲାଇ କ'ଣ ଘଟିଛି ଦେଖିବାକୁ ଦୌଡ଼ିଆସିଲେ ।

ଘଟଣା ସ୍ଥଳକୁ ଯାଇ ଦେଖିଲେ ଯେ, ଆଉ ଅଳ୍ପ ସମୟ ପରେ ଗାଡ଼ି ସେହି ଭଙ୍ଗା ପୋଲଠାରେ ପହଞ୍ଚିଥାନ୍ତା ଓ ହଜାର ହଜାର ଲୋକ ଦଣ୍ଡକ ମଧ୍ୟରେ ମରିଯାଇଥାନ୍ତେ ।

ଗାଡ଼ିଚାଳକ ସେହି ଦରିଦ୍ର ସ୍ତ୍ରୀଲୋକଟି ପାଖକୁ ଯାଇ ମୂଳରୁ ସବୁକଥା ପଚାରି ବୁଝିଲେ ।

ମା'ହିଅ ଦୁହେଁ ନିଜ ଘରର ଜନଖ ଦୁଇଖଣ୍ଡି ପୋଡ଼ିଦେଇ ହଜାର ହଜାର ଲୋକଙ୍କ ଜୀବନ ରକ୍ଷା କରିଥିବାରୁ ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ ।

## ପ୍ରଶ୍ନ

୧ । ପୋଲ ଭାଙ୍ଗିଯିବା କଥା ବାଳିକା କପରି ଜାଣିଲା ?

୨ । ମା'ହିଅ ଚୌକି ଟେବୁଲରେ ନିଆଁ ଲଗାଇ କାହିଁକି ଜଳନ୍ତା କାଠ ଓ ନାଲି ଜାମା ହଲାଇଲେ ।

---

# କୋଠଗୃହ

ଗୁରୁଜୀ—ପିଲାମାନେ ! ଆଜି ତ ଗହୀରକୁ ବୁଲିଯାଇ ଧାନକିଆରି ସବୁ ବୁଲି ଦେଖିଲ । କହିଲ, ସବୁ କିଆରିରେ ଧାନ ସମାନ ହୋଇନାହିଁ କାହିଁକି ?

ପିଲାମାନେ—ସବୁ ଜମିତ ସମାନ ନୁହେ । ଫସଲ ସମାନ ହେବ କପରି ?

ଗୁରୁଜୀ—ଗୋଟିଏ ତ ଗହୀର, ଏକ ପ୍ରକାର ମାଟି । ସେଥିରୁ ଖଣ୍ଡିକରେ ଭଲ ଧାନ ହେଲା, ଆଉ ଖଣ୍ଡିକରେ ଭଲ ନ ହେଲା କାହିଁକି ?

ପିଲାମାନେ—ଆମେ ଏ କଥା କହିପାରିବୁ ନାହିଁ ।

ଗୁରୁଜୀ—ଶୁଣ, ଆମ ଏ ଅଞ୍ଚଳରେ ଲୋକମାନେ ମିଳିମିଶି କାମ କରୁନାହାନ୍ତି; ତେଣୁ ଫସଲ ଭଲ ହେଉନାହିଁ । କଥା ଅଛି—'ଗୃହ ତର ତର ବଣିକ ମଠ ।'

ଯେଉଁ ଜମି ଆଗ ହଳ ହେଲା, ଖତ ପଡ଼ିଲା, ଶୀଘ୍ର ବୁଣା-ବୁଣି ହୋଇଗଲା, ସେହି ଜମିତକରେ ପାଗଯୋଗ ଠିକ୍ ପାଇ ଧାନ ଭଲ ହେଲା; କିନ୍ତୁ ଯେଉଁ ଗୃଷୀମାନେ ଅସୁବିଧା ଯୋଗୁଁ ଶୀଘ୍ର କାମ କରିପାରିଲେ ନାହିଁ, ତାଙ୍କର କଅଣ୍ଟିର ଧାନ ଖରାପ ହୋଇଗଲା ।

ପିଲାମାନେ—ସମସ୍ତେ ଠିକ୍ ସମୟରେ ସବୁ କଥା କରିବାରେ ଅସୁବିଧା କ'ଣ ?

ଗୁରୁଜୀ—ଅସୁବିଧା ତ ବହୁତ । ଦେଖ, ଭଲ ଗୃଷ କରିବାକୁ ହେଲେ ହାତରେ ପଇସା, ଭଲ ବଳଦ, ବହୁତ ଖତ, ଭଲ ବିହନ ଓ ଗୃଷ ଉପକରଣମାନ ଥିବା ଦରକାର । ଆମ ଗୃଷୀମାନେ ତ ଅଧିକାଂଶ ଗରିବ; ତେଣୁ ଅଭାବରୁ ଠିକଣାବେଳେ କାମ କରି ପାରନ୍ତି ନାହିଁ ।

ପିଲାମାନେ—ଆମ ସ୍କୁଲର ପ୍ରତି ଶ୍ରେଣୀର ପିଲାମାନେ ଯେପରି ପଇସା ଗୃନ୍ଦାକରି 'କୋଠବଗିଗ୍ଚ' କରିଛନ୍ତି, ସେହିପରି ଗୋଟିଏ ଗଁାରର ଗୃଷୀମାନେ ଏକାଠି ମିଶି କିଛି ପଇସା ଦେଇ କୋଠଗୃଷ କଲେ ତ ଭଲ ହୁଅନ୍ତା ?

ଗୁରୁଜୀ—ନିଶ୍ଚୟ ଭଲ ହୁଅନ୍ତା । ବାଲିକୁଦା ଗାଁର ଗୃଷୀମାନେ ଏହିପରି ମିଳିମିଶି 'କୋଠଗୃଷ' କରି ମହା ସୁଖରେ ଚଳୁଛନ୍ତି ।

ପିଲାମାନେ—ବାଲିକୁଦା ଲୋକେ କିପରି ପ୍ରଥମେ 'କୋଠଗୃଷ' କଲେ, ସେ କଥା ଟିକିଏ କହନ୍ତୁ ।

ଗୁରୁଜୀ—ବାଲିକୁଦା ଗୋଟିଏ ବଡ଼ ଗାଁ । ଦିନେ ଗାଁର ଲୋକମାନେ ସଭା କରି ସ୍ଥିର କଲେ ଯେ, ସମସ୍ତେ ମିଳିମିଶି ଗଁାରକୁ ଗୋଟିଏ କଅଣ୍ଟି କରି ଗୃଷ କରିବେ । ସମସ୍ତେ ଏଥିରେ

ରାଜି ହେଲେ । ଯେଉଁ ଜଣେ ଦିଜଣ ଲୋକ ରାଜି ହେଉ ନ ଥିଲେ, ସେମାନଙ୍କୁ ଭଲଭାବରେ ବୁଝାଇ ଦେବାରୁ ସେମାନେ ବି ରାଜି ହୋଇଗଲେ । କଥା ହେଲା—ଦୁଇ ତିନିବର୍ଷ ଏପରି କୋଠଚାଷ କରି ଯଦି ଲାଭ ନ ହୁଏ, ତେବେ ଆଗରୁ ଯେପରି ଥିଲା, ସେହିପରି ଚାଷ କରାହେବ । ତା ପରେ ମଝିରୁ ହିଡ଼ସବୁ ଉଠାଇ ଦେଇ ସମୁଦାୟ ଗହୀରକୁ ଗୋଟିଏ କିଆରି କରି ଦିଆଗଲା । ସେମାନେ



ଦେଖିଲେ ଯେ, ବଳଦଦ୍ୱାରା ହଳ କରିବାଠାରୁ କଳ ଲଙ୍ଗଳରେ ଚାଷ କରିବା ଶସ୍ତା ଓ ଭଲ; ତେଣୁ ଜଗତସିଂହପୁର କୃଷିଫାରମରୁ କଳଲଙ୍ଗଳ ଆଣି ଗହୀରକୁ ଚାଷ କରିଦେଲେ । ବାଲିକୁଦା ଲୋକଙ୍କର ଏ କାମ ଦେଖି ସରକାର ତାଙ୍କୁ ଭଲ ବିହନ, ଭଲ ଖତ ଯୋଗାଇ-ଦେଲେ । ଟଙ୍କା ଯାହାର ଦରକାର ହେଲା, ତାକୁ ଅଳ୍ପ ସୁଧରେ ଯୋଗାଇଦେଲେ । କିପରି ଚାଷ କଲେ ଭଲ ଫସଲ ମିଳିବ, ତାହା ମଧ୍ୟ ଲୋକଙ୍କୁ ବତାଇଦେଲେ ।

ପିଲାମାନେ—ଗ୍ରାମବାସୀମାନେ ଆଉ ନିଜ ହାତରୁ ଟଙ୍କା ଦେଇ ନାହାନ୍ତି ?

ଗୁରୁଜୀ—ପ୍ରତି ଜମିର ମାଲିକ ନିଜ ଜମିକୁ ଗୃହି ଖର୍ଚ୍ଚ ପାଇଁ ଟଙ୍କା ଦେଲେ । ଯାହା ପାଖରେ ଟଙ୍କା ନଥିଲା, ସେ ସରକାରଙ୍କ ଠାରୁ ଖୁବ୍ କମ୍ ସୁଧରେ କରଜ ଆଣି ଦେଲା । ଗାଁ-ବାଲାଙ୍କ ଭିତରୁ ୨।୩ ଜଣ ମୁଖିଆ ଲୋକ ସବୁ କଥା ବୁଝାସୁଝା କଲେ । ଟଙ୍କା ସବୁ ଆଦାୟ ହୋଇ ସେହି ମୁଖିଆ ଲୋକଙ୍କ ପାଖରେ ରହିଲା । ଯେଉଁ ଦିନ ଯେତେ ଟଙ୍କା ଦରକାର ହୁଏ, ସେମାନେ ଖର୍ଚ୍ଚ କରି ହିସାବ ରଖନ୍ତି । ପ୍ରତି ରବିବାର ଦିନ ଗାଁ ବାଲାଙ୍କୁ ଡାକି ହିସାବ ବୁଝାଇ ଦିଅନ୍ତି । ଏହିପରି କରିବାରୁ ଖର୍ଚ୍ଚ କମ ହେଲା ଓ ବହୁତ ଲାଭ ହେଲା ।

ପିଲାମାନେ—ବାଲିକୁଦାର ଲୋକମାନେ କେତେ ବର୍ଷ ହେଲା ଏପରି କଲେଣି ?

ଗୁରୁଜୀ—ପ୍ରାୟ ଗୃରବର୍ଷ ହେବ । ଗଲା ବର୍ଷ କୃଷି ପ୍ରଦର୍ଶନୀରେ ବାଲିକୁଦା ଗାଁର ଲୋକମାନେ ବହୁତ ଟଙ୍କା ପୁରସ୍କାର ପାଇଥିଲେ । ଆମ ବାଲକାଟିରେ ଗୋଟିଏ କୃଷି ପ୍ରଦର୍ଶନୀ ହୋଇଥିଲା, ତୁମେ ସବୁ ଦେଖିଥିବ ।

ପିଲାମାନେ—ଆଜ୍ଞା, ଦେଖିଛୁ । ଯେଉଁମାନେ ଭଲ ଭଲ ଫଳ, ଭଲ ଗାଈ, ବଳଦ ସବୁ ଆଣିଥିଲେ ସେମାନେ ପୁରସ୍କାର ପାଇଥିଲେ ।

ଗୁରୁଜୀ—ହଁ ହଁ, ଠିକ୍ ମନେ ରଖିଛ । ବାଲିକୁଦା ଗାଁର ଅବସ୍ଥା ଭଲ ହୋଇଯିବା ଦେଖି ଅଲଣା, ବାଉଦାଣ୍ଡି ପ୍ରଭୃତି ଗାଁର ଲୋକେ ମଧ୍ୟ ସେହିପରି ଗୃଷ କରିବାକୁ ବାହାରିଲେଣି ।

ଯେତେବେଳେ ଗ୍ରାମଆଡ଼େ ଏହି କୋଠଗୃହ ହୋଇଯିବ, ସେତେବେଳେ ଆମ ଦେଶର ଲୋକେ ଖାଇ ପିଇ ଆନନ୍ଦରେ ରହିବେ । ଆଜି ଏତିକି ହୋଇଥାଉ ।

## ପ୍ରଶ୍ନ

୧ । କୋଠଗୃହ କହିଲେ ତୁମେ କ'ଣ ବୁଝ ?
୨ । ବାଲିକୁଦା ଗାଁ ଲୋକଙ୍କ ଅବସ୍ଥା କିପରି ବଦଳିଲା ?
୩ । 'କୋଠଗୃହ' ଦ୍ୱାରା ବହୁତ ଲାଭ ହୁଏ—ଏ କଥା ବୁଝାଇ ତୁମ ସାଙ୍ଗ ପାଖକୁ ଖଣ୍ଡେ ଚିଠି ଲେଖ ।

---

# ଦୋଳ ମେଳଣ

ସନାତନ—କିଓ ରବି, ତୁମେ ତ ଘରକୁ ଯିବାକୁ ଅତି ଅସ୍ଥିର ହୋଇପଡ଼ୁଛ, ଅନ୍ୟ ଛୁଟିରେ ତ ଏପରି ହୁଅନାହିଁ । ଦୋଳଛୁଟିରେ ତୁମ ଗାଁରେ ବେଶୀ ଯାନି ଉତ୍ସବ ହୁଏ କି ?

ରବୀନ୍ଦ୍ର—ତୁମେ ତ ସହରୀ ପିଲା, ଜାଣିବ କ'ଣ ? ଦୋଳଛୁଟିରେ ଯେଉଁ ମଉଜ ମଜଲିସ୍ ହୁଏ, ତାହା କଣ, ଅନ୍ୟ କୌଣସି ଛୁଟିରେ ମିଳିବ ? ଆଠ ଦିନଯାଏ ଯାନି ହୁଏ । ସେଥିରୁ ତିନି ଦିନ କଟିଗଲା । ଆଜି ଦ୍ୱାଦଶୀ, ସ୍କୁଲ ବନ୍ଦ ହେଲା । ଏହି ତିନିଦିନ ମଧ୍ୟରେ ତିନିଟି ବଡ଼ ମେଳଣ ହୋଇଥିବ । ସେଥିରେ କେତେ ନାଚ, ସଙ୍କୀର୍ତ୍ତନ, ଫଗୁଖେଳ, ବାଣଫୁଟା ହୋଇଥିବ କିଏ କହିବ ? ମୋ ଭାଗ୍ୟରେ ତ ନାହିଁ, କ'ଣ କରିବ ?

ସନାତନ—ମୋତେ ଦୋଳଯାତ୍ରା କଥା କିଛିଏ କହ । ମୁଁ ତ ସେ ବିଷୟରେ କିଛି ଜାଣେ ନାହିଁ ?

ରବୀନ୍ଦ୍ର—ଫାଲ୍‌ଗୁନ ମାସ ଶୁକ୍ଳ ଦଶମୀଠାରୁ ଏହି ଯାତ୍ରା ଆରମ୍ଭ ହୁଏ । ଏହି ଦଶମୀ ରାତିରେ ଶ୍ରୀକୃଷ୍ଣ ଓ ଶ୍ରୀରାଧା ବିମାନରେ ବସନ୍ତି । ସେହି ବିମାନ ନାନାରଙ୍ଗର ବସ୍ତ୍ର ଓ ଜରିରେ ସଜା ହୋଇଥାଏ । ସେହି ବିମାନକୁ ଲୋକେ ଦୋଳ କହନ୍ତି । ସୁବାସ ଫୁଲର ମାଳ ଠାକୁରଙ୍କୁ ଦିଆଯାଏ । ବସନ୍ତଋତୁର ମଳୟ ପବନ ଧୀରେ ଧୀରେ ବହୁଥାଏ । ଦୋଳ ସଙ୍ଗରେ ଗୁଡ଼ିଏ ପାଞ୍ଚଟା ମଶାଲ ଜଳିବାରୁ ରାତିଟା ଦିନ ପରି ଦେଖାଯାଏ । ସେ ସମୟରେ କୀର୍ତ୍ତନ ହେଉଥାଏ । ତେଲିଙ୍ଗିବାଜା, ଢୋଲ, ମହୁରି, ଘଣ୍ଟା ଇତ୍ୟାଦି ବାଜୁଥାଏ । ସାଥିରେ ନାନାଜାତିର ବାଣ ଛୁଟା ଫୁଟୁଥାଏ । ଏହି ସମୟରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ନାନାପ୍ରକାର ଅଳଙ୍କାର ପିନ୍ଧି ବିମାନରେ ବସି ଗାଁଲୋକଙ୍କ ଘରକୁ ବୁଲି ବାହାରନ୍ତି । ପ୍ରାୟ ଛଅ ଜଣ ବା ଆଠ ଜଣ ଲୋକ ବିମାନ କାନ୍ଧେଇ ଯାଉଥାନ୍ତି । ଯେଉଁ ଭକ୍ତର ଘରେ ବିମାନ ରହେ, ସେଠାରେ ଘଣ୍ଟା, ଶଙ୍ଖ କାହାଳି ଓ ଅନ୍ୟାନ୍ୟ ବାଜା ବାଜେ, କୀର୍ତ୍ତନ ହୁଏ । ମିଠାଇ, ଜଲଦି, ଚଣା, ଖଜା, କୋରା, ଖଇ, ନଡ଼ିଆ ପ୍ରଭୃତି ଭୋଗ ହୁଏ । ଭୋଗ ପରେ ଠାକୁରମାନେ ଅନ୍ୟ ଘରକୁ ବିଜେ କରନ୍ତି । ଏହିପରି କେତେ ଘର ବୁଲିସାରିବା ପରେ ଠାକୁରମାନେ ମେଳଣ ପଡ଼ିଆକୁ ଯାଆନ୍ତି ।

ସନାତନ—ଠାକୁରଙ୍କ ଭୋଗଖାଇବା କଥା ତ କହିଲ । ଏବେ ମେଳଣ କଥା ଟିକିଏ କହ ।

ରଘୁନାଥ—ମେଳଣ ଅତି ଆଡ଼ମ୍ବରରେ ହୁଏ । କୋଡ଼ିଏ ପଚାଶଟି ଗ୍ରାମର ନିକଟସ୍ଥ ସ୍ଥାନରେ ଗୋଟିଏ ଗଡ଼ିଆ ତୋଟାରେ ମେଳଣ ହୁଏ । ସେହି ସ୍ଥାନକୁ ସବୁ ଗ୍ରାମର ଠାକୁର ଆସନ୍ତି । ଗୋଟିଏ ଗୋଟିଏ ଦୋଳ ସଙ୍ଗେ ଶହେ ଦେଢ଼ଶ ଲୋକ ବାଜା ବଜାଇ, ବାଣ ଫୁଟାଇ, ପଟୁଆର କରି ଆସିଲାବେଳେ ସେ ସ୍ଥାନଟି ଆନନ୍ଦରେ ଉଚ୍ଛୁଳି ପଡ଼େ ।

ବିମାନଗୁଡ଼ିକ ଆସି ମେଳଣ ପଡ଼ିଆରେ ରୁଣ୍ଡ ହୁଏ । ଆଗରୁ ମେଳଣ ପଡ଼ିଆଟିରେ ବହୁତ ପ୍ରକାର ନାଲି ନେଳୀ କାଗଜରେ ଜହ୍ନିର ଝଣା ହୋଇ ପବନରେ ଝୁଲୁ-ଥାଏ । ପଦ୍ମ ଫୁଲରେ ଗୃହଆଡ଼ ସୁନ୍ଦର ଭାବରେ ସଜା ହୋଇଥାଏ । ପ୍ରତି ବିମାନ ପାଇଁ ପଦ୍ମଫୁଲଦ୍ୱାରା ଗୋଟିଏ ଗୋଟିଏ କୁଞ୍ଜ ତିଆରି ହୋଇଥାଏ । ବିମାନସବୁ ସେହି



ସ୍ଥାନରେ ବସନ୍ତି । ମେଳଣ ସ୍ଥାନରେ ଯାହା କୀର୍ତ୍ତନ ହେଉଥାଏ । ଯେତେକ ଦୋଳଙ୍କୁ ନିମନ୍ତ୍ରଣ କରି-

ହୋଇଥାଏ, ସେମାନେ ଅସ୍ତୁ ଅସ୍ତୁ ପ୍ରାୟ ସକାଳ ହୋଇ ଯାଏ । ଠିକ୍ ସୂର୍ଯ୍ୟ ଉଇଁଲାବେଳକୁ ଯାତ୍ରା ବନ୍ଦ ହୋଇଯାଇ ସବୁ ଦୋଳଗୁଡ଼ିକର କୀର୍ତ୍ତିନିଆଙ୍କ ଦ୍ୱାରା କୀର୍ତ୍ତନ କରାଯାଏ । ଏହା ପରେ ଠାକୁରଙ୍କୁ ସ୍ନାନ କରାଯାଏ । ତା ପରେ ଅଳତି, ଭୋଗ ଇତ୍ୟାଦ ହୁଏ । ଶେଷରେ ଫଗୁଖେଳ ହୁଏ । ମେଳଣକୁ ଅସିବା ଯାତ୍ରୀମାନେ ଅବିରଗୁଣ୍ଡିରେ ନାଲ ଦେଖା ଯାଉଥାନ୍ତି ।

ଏହି ମେଳଣକୁ ଗୁଡ଼ିଆ ଦୋକାନଠାରୁ ଆରମ୍ଭ କରି ବଡ଼ ବଡ଼ ମନୋହରି ଦୋକାନ ମଧ୍ୟ ଆସିଥାଏ । ମୋଟା-ମୋଟି କହିବାକୁ ଗଲେ,ଏହି ମେଳଣ ସ୍ଥାନରେ ଗୋଟିଏ ବଡ଼ ବଜାର ବସିଥାଏ । ସେଥିରେ କୌଣସି ଜିନିଷର ଅଭାବ ନଥାଏ । ଏହି ମେଳଣ ଦେଖିବାକୁ ଗାଁ ପାଖ ଅଞ୍ଚଳର, ସ୍ତ୍ରୀ, ପୁରୁଷ, ବାଳକ, ବାଳିକା, ପିମ୍ପୁଡ଼ିଧାର ପରି ଗୁଳୁଥାନ୍ତି । ସ୍ଥାନଟିରେ ବଡ଼ ଲୋକଗହଳି ହୁଏ ।

ସନାତନ—ଏଠାରେ ସେପରି ଦୋଳ ମଜଳ ଅଦୌ ହୁଏ ନାହିଁ । ଆସନ୍ତା ବର୍ଷ ଦୋଳ ଛୁଟିରେ ନିଶ୍ଚେ ତୁମ ଗ୍ରାମକୁ ଯାଇ ମେଳଣ ଦେଖିଆସିବି ।

## ପ୍ରଶ୍ନ

୧ । ଦୋଳଯାତ୍ରା ଯେଉଁ ମାସରେ ହୁଏ,ସେହି ମାସରେ ହେଉଥିବା ଆଉ ଗୋଟିଏ ବଡ଼ ପର୍ବର ନାମ କହ ।

୨ । ଦୋଳ ମେଳଣ ବିଷୟରେ କ'ଣ ଜାଣ କହ ।

୩ । ଶୂନ୍ୟସ୍ଥାନ ପୂରଣ କରଃ—

(କ) ଏହି ବମାନଙ୍କୁ—କହନ୍ତି ।

(ଖ) ମେଲଣ ଅନ୍ତ—ହୁଏ ।

(ଗ) —ଫଗୁଖେଳ ହୁଏ ।

(ଘ) ତୁମ୍ଭେ ଛ—ପିନ୍ଧ ।

---

# ରାମଚନ୍ଦ୍ର ଓ ଗୁଣ୍ଡୁଚି

ବୀର ହନୁମାନ ଲଙ୍କାରେ ଠାବ କରିଲେ ସୀତା,
ତେଣିଣ ସାଗର ଶ୍ରୀରାମେ ଦେଲେ ଶୁଭ ବାରତା ।
କେଉଁ ପରି ଯିବା ଲଙ୍କାକୁ ଏବେ ପଡ଼େ ଭାବିଲେଣି,
ନ ଲଙ୍ଘିଲେ ସିନ୍ଧୁ ସୀତାଙ୍କୁ କେବେ ନ ହେବ ଆଣି ।
କୂଳରୁ ଲଙ୍କାକୁ ବାନ୍ଧିବା ବନ୍ଧ, ହୋଇଲା ସ୍ଥିର,
ଜଗାଡ଼ ପାହାଡ଼ ବହିଲେ ଛନ୍ତି ସକଳ ବୀର ।
ଧନବୀତ ଚାମ ଲାଗିଛି, ରାମ କୂଳରେ ବସି
ଗୁଣ୍ଡୁଚି ମୂଷାଏ ଦେଖିଣ ଦେଲେ ଅଳପ ହସି ।
ଥରକୁ ଥର ସେ ବୁଡ଼ୁଛି ଯାଇ ସମୁଦ୍ର ଜଳେ,
ଓଦା ଦେହେ ଗଡ଼ାଗଡ଼ୁଛି କୂଳ ବାଲି ଉପରେ ।
ଦେହେ ଲାଗିଥିବା ବାଲିକୁ ସେତୁ ଉପରେ ଝାଡ଼ି,
ପୁଣି ଆଣିବାକୁ ବାଲି ସେ ଚାଲିଯାଏ ଦଉଡ଼ି ।
ଦେଖି ଗୁଣ୍ଡୁଚିର ଏକାମ ତାକୁ ଆଦର କରି
ପଚାରିଲେ ରାମ ମଧୁରେ, "କଣ କରୁ ଏପରି ?"

କହଇ ଗୁଣ୍ଡୁଚି, "ଛାମୁଙ୍କୁ ପଡ଼ିଅଛୁ ବିପଦ,
ଶହ ଶହ ବୀର ଆନନ୍ଦେ ବାନ୍ଧୁ ଅଛନ୍ତି ବନ୍ଧ ।
ଶୁଣିଛୁ ବିପଦେ ଅନ୍ୟକୁ କଲେ ସାହାଯ୍ୟଦାନ,
ଈଶ୍ୱର ମଙ୍ଗଳ କରନ୍ତି, ହୁଏ ଧନ୍ୟ ଜୀବନ ।
ଶକ୍ତି ନାହିଁ ମୋର ଅଧିକ କିଛି କରିବା ପାଇଁ,
କୁଳୁଁ ବାଲି ବହି ଦେହରେ ବନ୍ଧେ ଦିଏ ପକାଇ ।
ଶ୍ରେଷ୍ଠ ମୁହିଁ, ବଳ ଅଳପ, ତେବେ ନାହିଁ ମୋ ଦୁଃଖ,
ପାରିବ ଯେତିକ କରୁଛି କାମେ ନୋହି ବିମୁଖ ।"

× × × ×



ହରଷେ ଶ୍ରୀରାମ ଆଉଁସି ଦେଲେ ଗୁଣ୍ଡୁଚି ଅଙ୍ଗ,
ତିନି ଗାର ହୋଇ ରହିଲା ଦେହେ ଅଙ୍ଗୁଳି ଦାଗ ।

× × × ×

ନାହାନ୍ତି ଶ୍ରୀରାମ, ନାହାନ୍ତି ସେ ସେତୁ, ହୋଇଛି ଲୀନ,
ରହିଛି ଗୁଣ୍ଡୁଚି ଅଙ୍ଗେ ସେ ରାମ ସେନେହ-ଚିହ୍ନ ।

## ପ୍ରଶ୍ନ

୧ । ଶେଷ ପଦଟି ପଢ଼ି କ'ଣ ବୁଝିଲ ?

୨ । ଗୁଣ୍ଡୁଚି ପିଠି ଉପରେ ତିନି ଗୋଟି ଗାର କପରି ରହିଲା ?

୩ । ବିପଦରେ ଲୋକର କପରି ସାହାଯ୍ୟ କରିବ ?



# ଭାଇମାନେ ମିଳିମିଶି ଗଲେ

ଶଙ୍ଖୋପୂଳା ନଈକୂଳରେ ସୋନପୁର ବୋଲି ଗାଁଟିଏ ଅଛି । ସେହି ଗାଁରେ ନୃସିଂହ ବଣ୍ଟାଳ ନାଆଁରେ ବୁଢ଼ା ଚଷାଟିଏ ଥାଏ । ବୁଢ଼ାର ବହୁତ ଗୃହଜମି ଓ ବାଗବଗିଚା ଥିଲା । ଗାଈଗୋରୁ ମଧ ଅନେକ ଥିଲେ । ବୁଢ଼ାର ତିନିପୁଅ । ତିନିହେଁ ଏବେ ମଜଭୁତ ଭେଣ୍ଡା ହେଲେଣି । ସେମାନେ ବିଲବାଡ଼ି କାମ କରନ୍ତି, ଗାଈଗୋରୁଙ୍କୁ ଖୁଆପିଆ, ଚଳବୁଲା, କରନ୍ତି ଓ ଧାନ, ମୁଗ, ବିରି, କୋଳଥ, ଆଖୁ, କପା, ଝୋଟ ଆଦି ନାନା ଫସଲ କରନ୍ତି । ସାରୁ, ଆଳୁ, ବାଇଗଣ, ଜହ୍ନି, ଭେଣ୍ଡି, କଖାରୁ, କାକୁଡ଼ି, କଲରା, ଖଡ଼ା, ଲେଉଟିଆ ଆଦି ବାରମାସୀ ପନି ପରିବା ତାଙ୍କଘରୁ କେବେ ହେଲେ ଛାଡ଼ି ନ ଥାଏ । ଘରେ ସବୁବେଳେ ଗାଈଦୁହାଁଳ; ତେଣୁ ଦୁଧ, ଦହି, ଘିଅ, ଛେନାର ଅଭାବ କେବେହେଲେ ହେଲେ ନ ଥାଏ ।

ପଡ଼ାଗାଁରେ ଖୋଲା ପବନରେ ବୁଲି, ନଈର ନିର୍ମଳ ଜଳପାଣି ପିଇ ଓ ସେଇ ପାଣିରେ ଗାଧୋଇ, ଘରେ ନାନା ପ୍ରକାର ଭଲ ଖାଦ୍ୟ ଖାଇ ସେମାନେ ସୁସ୍ଥ ସବଳ ହୋଇଥାନ୍ତି ।

ଏତେ ଥିଲାଘର ହେଲେ କ'ଣ ହେବ, ସେମାନଙ୍କର କାହାରି ମନରେ ସୁଖ ନ ଥାଏ । ସମୟେ ସମୟେ ଭାଇମାନଙ୍କ ମଧ୍ୟରେ କଳିଗୋଳ ହୁଏ । ଏହି କଳିଗୋଳ କ୍ରମେ ଏପରି ବଢ଼ିଲା ଯେ ତାହିଁରେ କେହି କାହାକୁ ସୁଖ ପାଇଲେ ନାହିଁ । ଏପରି କି ଜଣେ ବେମାର ହେଲେ ସୁଦ୍ଧା ଅନ୍ୟଜଣେ ତାକୁ ଆଡ଼ ଆଖିରେ ଚାହିଁଲା ନାହିଁ ।

ବୁଢ଼ାର ଘରେ ଧନ, ଜନ, ଗାଈଗୋରୁ ଆଦି ପୂରି ରହିଥିଲେ ମଧ୍ୟ ପୁଅମାନଙ୍କର ଏପରି ଚାଲିଚଳନ ଦେଖି ସେ ବଡ଼ ଦୁଃଖରେ ଦିନ କାଟୁଥାଏ । ଦିନେ ବୁଢ଼ା ଗୋଟିଏ ଉପାୟ ପାଞ୍ଚି ସବୁ ପୁଅଙ୍କୁ ନିଜ ପାଖକୁ ଡକାଇଲା ।

ପୁଅ ତିନିହେଁ ବାପ ପାଖରେ ପହଞ୍ଚି ଡକାଇବାର କାରଣ ପଚାରିଲେ । ବାପ କହିଲା, "ଏହି ଯେ ନିକଟରେ କାଠ ବିଡ଼ାଟି ଦେଖୁଛ, ସେ ବିଡ଼ାଟିକ ନ ଫିଟାଇ ଭାଙ୍ଗ ତ ।" ତିନି ପୁଅଙ୍କ ମଧ୍ୟରେ ବଡ଼ ପୁଅ ବେଶୀ ବଳୁଆ । ସେ ପ୍ରଥମେ କାଠବିଡ଼ାଟିକୁ ଦୁଇ ହାତରେ ଧରି ଆଣ୍ଠୁରେ ଭିଡ଼ି ଭାଙ୍ଗିବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କଲା । ଶେଷକୁ ତା ଦେହରୁ ଝାଳ ଝାଳ ବୋହିଗଲା । ତଥାପି ଭାଙ୍ଗି ନ ପାରି ଶେଷକୁ ଥକ୍‌କାମାରି ବସିପଡ଼ିଲା । ଅନ୍ୟ ଦୁଇଭାଇ ମଧ୍ୟ ଠେଲାପେଲି ବହୁତ ଚେଷ୍ଟା କଲେ; ମାତ୍ର ଭାଙ୍ଗି ନ ପାରି କାଠ ବିଡ଼ାଟି ଥୋଇଦେଲେ ।

ପୁଅମାନେ ନ ପାରିବାର ଦେଖି ବୁଢ଼ା କହିଲେ, "ପିଲାଏ, ତୁମ୍ଭେମାନେ ବିଡ଼ାଟି ଫିଟାଇ ଖଣ୍ଡ ଖଣ୍ଡ କରି କାଠ ଗୁଡ଼ିକ ଭାଙ୍ଗି



ଦିଅ ତ ।" ବାପାଙ୍କ କଥା ଶୁଣି ପୁଅମାନେ ଅତି ସହଜରେ ପ୍ରତି କାଠଖଣ୍ଡିକୁ ଭାଙ୍ଗି ଥୋଇଦେଲେ ।

ଶେଷକୁ ବୁଢ଼ା ପୁଅମାନଙ୍କୁ ବୁଝାଇ କହିଲେ, "ତୁମ୍ଭେମାନେ କାଠବିଡ଼ାଟାର ବଳ ଦେଖିଲ ତ ? ଯେତେବେଳ ପର୍ଯ୍ୟନ୍ତ ଛୋଟ ଛୋଟ କାଠଖଣ୍ଡମାନ ଗୋଟାଏ ବିଡ଼ା ହୋଇଥିଲେ, ସେତେବେଳ-ପର୍ଯ୍ୟନ୍ତ ତାକୁ ଭାଙ୍ଗି ହେଉ ନଥିଲା । ଯେତେବେଳେ କାଠଗୁଡ଼ିକ ବିଡ଼ାରୁ ଫିଟି ଖଣ୍ଡି ଖଣ୍ଡି ହେଲା, ସେତେବେଳେ ଅତି ସହଜରେ ଗୋଟି ଗୋଟି ହୋଇ ସବୁ କାଠ ଭାଙ୍ଗିଗଲା । ସେହିପରି ତୁମ୍ଭେ ଭାଇମାନେ ଯେତେଦିନ ପର୍ଯ୍ୟନ୍ତ ମନ ମିଳାଇ ଚଳୁଥିବ, ସେତେ-ଦିନ ଯାଏ ତୁମ୍ଭମାନଙ୍କର ଧନ, ମାନ ବଢ଼ିବ । ଶତ୍ରୁମାନେ ତୁମର ଅନିଷ୍ଟ କରିପାରିବେ ନାହିଁ । ଖାଇବା ପିନ୍ଧିବାର ଅଭାବ ହେବ ନାହିଁ । ସୁଖରେ ଜୀବନ କଟିଯିବ ।"

ସେହି ଦିନଠାରୁ ପୁଅମାନେ ବାପା କଥା ମାନି ଚଳିଲେ ।

## ପ୍ରଶ୍ନ

୧ । ଗୃହୀମାନେ ପଡ଼ାଗାଁରେ କି କାମ କରନ୍ତି ?

୨ । ବାଡ଼ରେ କି କି ପନିପରିବା କଲେ ବାରମାସ ପରିବା ଖର୍ଚ୍ଚ ଚଳିଯିବ ।

୩ । ସୁସ୍ଥ ହେବାକୁ ହେଲେ କି କି ଜିନିଷ ବେଶୀ ଲୋଡ଼ା ?

୪ । ଧନ ବହୁତ ଥାଇ ସୁଖ ନମିଳିବାର କାରଣ କଅଣ ?

୫ । ଭାଇ ଭାଇ ମିଳିମିଶି ଚଳିବା ଦ୍ୱାରା କି ଉପକାର ହୁଏ ? ତାହା ନ କଲେ କି କୁଫଳ ଭୋଗିବାକୁ ହୁଏ ?

---

# ପର କଥା ଭାବ

ମହାତ୍ମା ଗାନ୍ଧୀଙ୍କ ନାଁ ସମସ୍ତେ ଶୁଣିଥିବ । ସେ ପୃଥିବୀରେ ସବୁଠାରୁ ବଡ଼ ଜ୍ଞାନୀ ଲୋକ ହୋଇଥିବାରୁ ତାଙ୍କୁ ମହାତ୍ମା ବୋଲି କହନ୍ତି । ମହାତ୍ମା ଗାନ୍ଧୀ ପିଲାଙ୍କ ପରି ଭାରି ସରଳ ଥିଲେ । ସମସ୍ତେ ସଫାସୁତୁରା ରହିଲେ ଦେଶରୁ ଅନେକ ରୋଗ କମିଯିବ ବୋଲି ସେ ସମସ୍ତଙ୍କୁ ବୁଝାଉ ଥିଲେ ଓ ନିଜେ ସେହିପରି କରୁଥିଲେ ।

ଥରେ ମହାତ୍ମା ଗାନ୍ଧୀ ରେଳଗାଡ଼ିରେ ବସି ଗୋଟିଏ ସ୍ଥାନକୁ ଯାଉଥିଲେ । ସେ ଯେଉଁ ଡବାରେ ବସିଥିଲେ, ସେଥିରେ ଭାରି ଭିଡ଼ ହୋଇଥିଲା ।

ମହାତ୍ମା ଦରିଦ୍ରଙ୍କ ପରି ଖଣ୍ଡିଏ ଛୋଟିଆ ହାତବୁଣା ଲୁଗା ପିନ୍ଧିଥାନ୍ତି ଓ ମୋଟା ଛୋଟ ଗୁଦଡ଼ିଟିଏ ଦେହରେ ପକାଇ ବସି-ଥାନ୍ତି । ସମସ୍ତେ ମହାତ୍ମାଙ୍କ ନାଁ ଶୁଣିଥିଲେ ମଧ୍ୟ ଦେଖି ନ ଥିବାରୁ ଗାଡ଼ିରେ କେହି ତାଙ୍କୁ ଚିହ୍ନି ପାରିଲେ ନାହିଁ ।

ମହାତ୍ମାଙ୍କ ପାଖରେ ଜଣେ ଯାତ୍ରୀ ବସି ଘୁଡ଼ୁଘୁଡ଼ୁ କରି ହୁକା ଖାଉଥାଏ; ହୁକାଧୂଆଁରେ ଡବାଟା ଗନ୍ଧାଉଥାଏ । ଧୂଆଁ ଖାଇ ସେ ଯାତ୍ରୀ ଛେପ ଖଙ୍କାର ସବୁ ଡବା ଭିତରେ ପକାଉଥାଏ ।

ମହାତ୍ମା କେବେହେଲେ ଧୂଆଁ ଖାଆନ୍ତି ନାହିଁ । ତାଙ୍କୁ ଏସବୁ ବଡ଼ ଖରାପ ଲାଗିଲା । ସେ ଦେଖିଲେ, ଏପରି ହେଲେ ଡବାଟିରେ ବସିଥିବା ସବୁ ଲୋକଙ୍କ ସ୍ୱାସ୍ଥ୍ୟ ଖରାପ ହେବ । ତେଣୁ ସେ ଧୀରଭାବରେ ସେ ଲୋକଟିକୁ କହିଲେ, "ଭାଇ, ଧୂଆଁ ଖାଇବା ବଡ଼ ଖରାପ । ଧୂଆଁ ଖାଇବା ଯୋଗୁଁ ତୁମର କଫ ଓ କାଶ ରୋଗ ହେଉଛି । ପୁଣି ଗାଡ଼ି ଭିତରେ ଛେପ ଖଙ୍କାର ପକାଇବା ଦ୍ୱାରା ସମସ୍ତଙ୍କର ଅସୁବିଧା; ତେଣୁ ଆଉ ଧୂଆଁ ଖାଅ ନାହିଁ ।

ଏହା ଶୁଣିବାମାତ୍ରେ ଯାତ୍ରୀଟି କହିଲା, "ତୁମେ କିଏ ହୋ ? ଭାରି କଥା କହି ଜାଣ ! ଧୂଆଁ ଖାଇଲେ ତୁମର ଯେପରି ଅସୁବିଧା, ଧୂଆଁ ନ ଖାଇଲେ ମୋର ବି ସେମିତି ଅସୁବିଧା ମୁଁ କ'ଣ କରିବି ?"

ମହାତ୍ମା କହିଲେ, "ଯେଉଁ କଥା କଲେ ବେଶୀ ଲୋକଙ୍କର ଅସୁବିଧା ହେବ, ସେଇକଥା କରିବା ଉଚିତ ।"

ଯାତ୍ରୀଟି ଏହା ଶୁଣି ରାଗିଯାଇ କହିଲା, "କାହିଁକି,ମୁଁ କ'ଣ ମାଗଣା ରେଲରେ ଯାଉଛି ? ତୁମ ପରି ମୁଁ ମଧ୍ୟ ପଇସା ଦେଇ ଗାଡ଼ିରେ ବସିଛି । ମୁଁ ଆଗ ମୋ ସୁବିଧା ଦେଖିବି । ବେଶୀ କଥା-ଭାଷା କର ନାହିଁ । ତୁନି ହୋଇ ବସ । ଯଦି ଖରାପ ଲାଗୁଛି, ଅନ୍ୟ ଡବାକୁ ଚାଲିଯାଅ ।"

ଯାତ୍ରୀଟିର କଥା ଶୁଣି ମହାତ୍ମା କହିଲେ, "କଥା କହୁ କହୁ ଏପରି ରାଗି ଯାଉଛ କାହିଁକି ? ଆମେ ସମସ୍ତେ ରେଲରେ ଯିବା ପାଇଁ ପଇସା ଦେଇଥାଏଁ ସତ, ତା' ବୋଲି ଖାଲି ନିଜ ସୁବିଧା ଦେଖି ପରକଥା ନ ଭାବିବା ଉଚିତ ନୁହେ । ସେଥିପାଇଁ ଗାଡ଼ି ଭିତରେ ଧୂଆଁ ଖାଇବା ଛେପ ଖଙ୍କାର ପକାଇ ମଇଳା କରିବା ମନା ଅଛି । ଆଇନ ଅଛି—ଡବା ଭିତରେ କେହି ଏପରି କରିପାରିବେ ନାହିଁ ।"

ଏଥର ଯାତ୍ରୀଟି ଖୁବ୍ ବିରକ୍ତ ହୋଇ କହିଲା, "ଓହୋ ! ଭାରି ଆଇନ ଯାଙ୍କୁ ଜଣା । ତୁମ କଥା ମୁଁ ଆଦୌ ଶୁଣିବି ନାହିଁ । ମୋର କିଏ କ'ଣ କରିବ କରୁ । ମୁଁ ଏଇଠି ଖଙ୍କାର ପକାଇବି ।"

ଏହା କହି ମହାତ୍ମାଙ୍କ ବସିବା ସ୍ଥାନ ପାଖରେ ଥୁ ଥୁ କରି ବହୁତ ଖଙ୍କାର ପକାଇଲା ଓ ହୁକାଖାଇ ମହାତ୍ମାଙ୍କ ମୁହଁ ଆଡ଼କୁ ଧୂଆଁ ଛାଡ଼ିଲା । ମହାତ୍ମା ଆଉ ତାକୁ କିଛି ନ କହି ନିଜର ରୁମାଲଟି ବାହାର କରି ଯାତ୍ରୀ ପକାଇଥିବା ଛେପ ଖଙ୍କାରକୁ ପୋଛି ବାହାରକୁ ଫୋପାଡ଼ି ଦେଲେ ।

ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ନିଜେ ହୁକା ଖାଉଥିବା ଯାତ୍ରୀକୁ ମଧ୍ୟ ବଡ଼ ଲାଜ ମାଡ଼ିଲା । ସେ ଆଉ ହୁକା ଖାଇଲା ନାହିଁ ।

କିଛି ସମୟ ପରେ ଗୋଟିଏ ଷ୍ଟେସନରେ ଗାଡ଼ି ରହିଲା । ହଜାର ହଜାର ଲୋକ "ମହାତ୍ମା ଗାନ୍ଧିଜୀ ଜୟ" କହି ଡବା ସବୁ ଖୋଜି ପକାଉଥାନ୍ତି, ଏହି ସମୟରେ ମହାତ୍ମା ଡବା ଭିତରୁ ବାହାରି ଆସି ସମସ୍ତଙ୍କୁ ନମସ୍କାର କଲେ ।

ଅଳ୍ପ ସମୟ ପୂର୍ବରୁ ନିଜ ହାତରେ ଛେପ ଖଙ୍କାର ପୋଛୁ-ଥିବା ବୁଢ଼ାଟି ଯେ ନିଜେ ମହାତ୍ମାଗାନ୍ଧୀ ଏକଥା ଜାଣିପାରି ଡବାରେ ଥିବା ସମସ୍ତ ଲୋକ ଆଶ୍ଚର୍ଯ୍ୟ ହୋଇଗଲେ ।

ଯେଉଁ ଲୋକ ମହାତ୍ମାଙ୍କୁ ଗାଳି ଦେଇଥିଲା, ସେ ହଠାତ୍ ଗାଡ଼ିରୁ ଓହ୍ଲାଇ ପଡ଼ି ତାଙ୍କ ପାଦଧରି କହିଲା, ମୁଁ ଆପଣଙ୍କୁ ଚିହ୍ନି ନ ପାରି ବହୁତ କଥା କହିଦେଇଛି; ମୋତେ କ୍ଷମା କରନ୍ତୁ ।"



ମହାତ୍ମା ତାଙ୍କୁ ଟେକି ଉଠାଇ କହିଲେ, "ଭାଇ, ନିଜେ ସଫା ରହିଲେ ନିଜର ଉପକାର ହେବ ଓ ଅନ୍ୟମାନଙ୍କର ମଧ୍ୟ ଉପକାର ହେବ । ଏତିକି କଥା ମନେ ରଖ—ଦେଶବାସୀଙ୍କ ସ୍ୱାସ୍ଥ୍ୟ ପ୍ରତି ସବୁବେଳେ ନଜର ଦେବ ।"

## ପ୍ରଶ୍ନ

୧ । ଜଣେ ପିଲା ମହାତ୍ମା ଗାନ୍ଧି ଓ ଆଉ ଜଣେ ରେଲଡବାର ଯାତ୍ରୀ ହୋଇ ସେମାନଙ୍କ କଥୋପକଥନର ଅଭିନୟ କର ।

୨ । ଦେଶବାସୀଙ୍କ ସ୍ୱାସ୍ଥ୍ୟ ପ୍ରତି ସବୁବେଳେ ନଜର ଦେବ, ଏ କଥା କିଏ କାହାକୁ କହିଥିଲେ ?

୩ । ଆଶ୍ଚର୍ଯ୍ୟ, ବିରକ୍ତ, ମହାତ୍ମା, ଜ୍ଞାନୀ, ଦରିଦ୍ର—ଏ ଶବ୍ଦଗୁଡ଼ିକର ଅର୍ଥ କହ ।

---

# ପତାକା ପାଇଁ ପ୍ରାଣବଳୀ

ଆମ ଦେଶର ବହୁ ଦୂରରେ ଚୀନ ବୋଲି ଗୋଟିଏ ଦେଶ ଅଛି । ସନାୟାତ ସେନ୍ ନାମରେ ଜଣେ ଲୋକ ଚୀନ ଦେଶକୁ ସ୍ୱାଧୀନ କରିଥିଲେ, ଚୀନର ଲୋକମାନଙ୍କୁ ବହୁତ ଦୁଃଖକଷ୍ଟରୁ ରକ୍ଷା କରିଥିଲେ । ସେ ମରିଗଲେଣି; ମାତ୍ର ଚୀନ୍ ଦେଶର ଲୋକମାନେ ତାଙ୍କ ସମାଧିକୁ ଦେବତା ପରି ପୂଜା କରନ୍ତି ।

ଥରେ ଚୀନ୍ ସହିତ ତା ପାଖରେ ଥିବା ଜାପାନ ଦେଶର ଯୁଦ୍ଧ ହେଲା । ଚୀନ୍ ସୈନ୍ୟମାନେ ଯୁଦ୍ଧରେ ହାରିଗଲେ । ଜାପାନୀ ମାନେ ସନାୟାତଙ୍କ ସମାଧି ଉପରେ ଉଡ଼ୁଥିବା ଚୀନ୍ ପତାକାକୁ କାଢ଼ିଦେଇ ତା ଉପରେ ଜାପାନୀ ପତାକା ଉଡ଼ାଇ ଦେଲେ ।

ଏ କଥା ଦେଖି ଚୀନ୍ ସେନାପତିଙ୍କ ମନ ଅସ୍ଥିର ହୋଇଉଠିଲା । ଜୀବନ ଯିବ ପଛେ, ସମାଧି ଉପରୁ ଜାପାନୀ ପତାକା ଟାଣି ଫୋପାଡ଼ିଦେବେ ବୋଲି ପ୍ରତିଜ୍ଞା କଲେ । ପାଖରେ ତାଙ୍କର ୧୬ ବର୍ଷର ପୁଅ ମଂଛୁ ଠିଆ ହୋଇଥିଲା । ସେନାପତି ନିଜ ବେକରୁ ଗୋଟିଏ ସୁନାର ହାର ବାହାର କରି ମଂଛୁ ବେକରେ ଝୁଲାଇ ଦେଇ କହିଲେ, "ଯାଉଛି ବାପା ! ଭଗବାନ ତୋତେ ଆନନ୍ଦରେ ରଖନ୍ତୁ ।

ଏକଥା ଶୁଣି ମଂଗୁ ପଚାରିଲେ, "କେଉଁଠିକି ଯାଉଛନ୍ତି ବାପା !"

ସେନାପତି କହିଲେ, ତୋତେ କ'ଣ ଦେଖାଯାଉ ନାହିଁ, ସନ୍ୟାତ୍ସେନଙ୍କ ସମାଧି ଉପରେ ଜାପାନୀ ପତାକା ଉଡୁଛି ? ଯାଉଛି ସେଇ ପତାକାକୁ ଚିରଦେଇ ସେଠାରେ ପୁଣି ଚୀନ ପତାକା ଉଡ଼ାଇ ଦେଇ ଆସିବ ।"

ଏ କଥା ଶୁଣି ମଂଗୁ ସଙ୍ଗେ ସଙ୍ଗେ କହିଲା, "ଆପଣ ଏକା ହୋଇ ଯାଆନ୍ତୁ ନାହିଁ । ମୋତେ ସଙ୍ଗରେ ନିଅନ୍ତୁ । ଯଦି କିଛି ବିପଦ ପଡ଼େ, ଆପଣଙ୍କୁ ସାହାଯ୍ୟ କରିବି ।"

ସେନାପତି ୧୬ ବର୍ଷର ପିଲା ପୁତ୍ରଙ୍କୁ ଏପରି କଥା ଶୁଣି କିଛି ସମୟ ତୁନି ହୋଇ କ'ଣ ଭାବିଲେ । ତା ପରେ କହିଲେ, ମୋ ପଛେ ପଛେ ଆ ।"

ଜାପାନୀମାନେ ସମାଧି ଆଗରେ ତମ୍ବୁ ପକାଇ ଆନନ୍ଦରେ କାଏ କୁଆଡ଼େ ବୁଲୁଥାନ୍ତି । ଅନ୍ଧାର ରାତି । ଦୁଇଜଣ ସୈନିକ ତମ୍ବୁ ଭିତରେ ବସିଥାନ୍ତି । ଏହି ସମୟରେ ତମ୍ବୁ ପଛପଟେ କ'ଣ ଗୋଟାଏ ଶବ୍ଦ ହେଲା । କି ଶବ୍ଦ ହେଲା ବୋଲି ଜଣେ ସୈନିକ ଦେଖିବା ପାଇଁ ବାହାରକୁ ଆସିବା ମାତ୍ରେ ଚୀନ ସେନାପତି ତାକୁ ମାଡ଼ିବସି ଚୋଚିଚିପି ମାରିଦେଲେ । ତା'ର ପୋଷାକ ନିଜେ ପିନ୍ଧି ପୁଅ ହାତକୁ ଧରି ତମ୍ବୁ ଭିତରକୁ ପଶିଲେ ।

ତମ୍ବୁ ଭିତରେ ଥିବା ସୈନିକ ପଚାରିଲା, "ଏଟୋକାଟା କିଏ ? ଜାପାନୀ ପୋଷାକ ପିନ୍ଧିଥିବା ଚୀନ୍ ସେନାପତି ଜାପାନୀ ଭାଷାରେ କହିଲେ, "ଏ ଚୀନ୍ ଲୋକ । ଅନ୍ଧାରରେ ବୁଲୁଥିଲା । ବନ୍ଦୀ କରି ଆଣିଛି ।"

ଜାପାନୀ ସୈନିକଟି ବନ୍ଦୀଆଡ଼କୁ ଏକଲୟରେ ଚାହିଁବା ବେଳେ ଚୀନ୍ ସେନାପତି ପଛପଟୁ ମାଡ଼ିବସି ତାକୁ ମାରିଦେଲେ ଏବଂ ତା'ର ପୋଷାକ ବାହାର କରି ମଂଗୁକୁ ପିନ୍ଧାଇ ଦେଇ ବାପପୁଅ ଦୁହେଁ ସମାଧି ଆଡ଼କୁ ଚାଲିଲେ ।

ଦୁହେଁଯାକ ଜାପାନୀ ପୋଷାକ ପିନ୍ଧିଥିବାରୁ କୌଣସି ଜଗୁଆଳି ତାଙ୍କୁ ବାଧା ଦେଲେ ନାହିଁ । ବାପପୁଅ ସମାଧି ଉପରକୁ ଚଢ଼ି ମୁଣ୍ଡ ନୁଆଁଇଲେ । ଜାପାନ ପତାକାକୁ ଚିରିଦେଇ ଚୀନ୍ ପତାକା ଉଡ଼ାଇଦେଲେ ।

ସକାଳୁ ଦେଖାଗଲା, ସମାଧି ଉପରୁ ଜାପାନ ପତାକା କୁଆଡ଼େ ଯାଇ ଚୀନ୍ ପତାକା ଉଡୁଛି । ଜାପାନୀଙ୍କ ମଧ୍ୟରେ ଚହଳ ପଡ଼ିଗଲା ।



କିଏ ଏପରି କଲା ଭାବି ଜାପାନୀ ସୈନ୍ୟମାନେ ବନ୍ଧୁକ ହାତରେ ଧରି ଉପରକୁ ଉଠିବାମାତ୍ରେ ଗୁଳିମାଡ଼ ଖାଇ ତଳେ ପଡ଼ିଗଲେ । ଏହିପରି ଅନେକ ସୈନ୍ୟ ମରି ତଳେ ପଡ଼ୁଥାନ୍ତି ।

ଜାପାନ ସେନାପତି ଦେଖିଲେ, ଦୁଇଜଣ ଲୋକ ସମାଧି ଉପରେ ରହି ଗୁଳି ଚଳାଉଛନ୍ତି । ସଙ୍ଗେ ସଙ୍ଗେ ସମାଧି ଉପରେ ବୋମା ପକାଇବାକୁ ସେନାପତି ଆଦେଶ ଦେଲେ । ବୋମା ପଡ଼ି ସମାଧିରୁ ଅଧେ ଭାଙ୍ଗି ପଡ଼ିଲା ।

ଏହି ସମୟରେ ମଂଚୁ ତଳକୁ ଚାହିଁ ଦେଖିଲା, ତା'ର ବାପା ବୋମା ମାଡ଼ରେ ତଳକୁ ଖସି ପଡ଼ିଛନ୍ତି ଓ ଜାପାନୀମାନେ ତାଙ୍କୁ ଟିକଟିକ କରି ହାଣି ପକାଉଛନ୍ତି । ଏହା ଦେଖି ମଂଚୁର ଦେହ ରାଗରେ ଜଳିଗଲା । ସେ ଟିକିଏ ହେଲେ ଭୟ ନକରି ବନ୍ଧୁକ ଧରି ଠିଆ ହେଲା । ବହୁ ଜାପାନୀ ସୈନ୍ୟଙ୍କୁ ଗୁଳି କରି ତଳେ ଶୁଆଇଦେଲା । ସେତେବେଳକୁ ମଂଚୁ ଦେହରେ ଗୁଳି ବାଜି ଝରଝର ରକ୍ତ ବହିଯାଉଥାଏ । କିନ୍ତୁ ସେ, ସେ କଥାକୁ ଖାତିର ନ କରି ଗୁଳି ଚଳାଇବାରେ ଲାଗିଥାଏ । ଏତିକିବେଳେ ଆଉ ଗୋଟାଏ ବୋମା ପଡ଼ି ମଂଚୁ ସହିତ ସମାଧି ମନ୍ଦିରକୁ ମାଟିରେ ମିଶାଇ ଦେଲା ।

ମଂଚୁ ବଞ୍ଚିଥିବା ପର୍ଯ୍ୟନ୍ତ ଜଣେ ସୁଦ୍ଧା ଜାପାନୀ ସମାଧି ଉପରେ ପାଦ ପକାଇ ପାରିଲେ ନାହିଁ ।

## ପ୍ରଶ୍ନ

୧ । ତୁମ୍ଭ ଦେଶର ପତାକା ନାମ କ'ଣ ? ଚୀନ୍ ସେନାପତି କାହିଁକି ଜାପାନୀ ପତାକା ଖଣ୍ଡ ଫୋପାଡ଼ି ଦେବାକୁ ପ୍ରତିଜ୍ଞା କଲେ ।

୨ । ମଂଚୁ ଓ ତାର ପିତା କପରି ଭାବରେ ଜାପାନ ପତାକାକୁ ଚିରି ଦେଇ ନିଜ ଦେଶର ପତାକା ଉଡ଼ାଇଲେ ?

୩ । ଚୀନ୍ ସେନାପତି ମରିଯିବା ପରେ ମଂଚୁ କପରି ପତାକା ପାଇଁ ପ୍ରାଣ ଦେଲା ବର୍ଣ୍ଣନା କର ।

୪ । ସଜାଡ଼ି ଲେଖ—(କ) ଅଧେ ଭଜ୍ଜି ପଡ଼ିଲା ସମାଧିରୁ ବୋମା-
ପଡ଼ି । (ଖ) ଶୁଆଇ ଦେଲା ତଳେ ଚୁଲି କରି ଜାପାନୀ
ସୈନ୍ୟଙ୍କୁ ବନ୍ଧୁ । (ଗ) ପଡ଼ିଗଲା ଚହଲ ଜାପାନୀଙ୍କ ମଧ୍ୟରେ ।



# ହିନ୍ଦୁ ମୁସଲମାନ ଭାଇ ଭାଇ

ନୂଆଖାଲି ଗୋଟିଏ ବଡ଼ ସହର । ସେଠାରେ ବହୁତ ମୁସଲମାନ, ହିନ୍ଦୁ ଅଳ୍ପ । ଥରେ ନୂଆଖାଲିର ହିନ୍ଦୁ ଓ ମୁସଲମାନ ଦୁଇ ଜାତି ଭିତରେ ଗଣ୍ଡଗୋଳ ଲାଗିଲା । ହିନ୍ଦୁମାନେ ମୁସଲମାନ-ମାନଙ୍କୁ ମାରିଲେ, ମୁସଲମାନମାନେ ହିନ୍ଦୁଙ୍କୁ ମାରିଲେ । ହିନ୍ଦୁମାନଙ୍କ ସଂଖ୍ୟା ଅଳ୍ପ ହୋଇଥିବାରୁ ସେମାନେ ମୁସଲମାନମାନଙ୍କ ବଳରେ ପାରିଲେ ନାହିଁ । ଅନେକ ହିନ୍ଦୁ ମଲେ । ତହୁଁ ଅନ୍ୟମାନେ ପ୍ରାଣ ଭୟରେ ଧନ ସମ୍ପତ୍ତି, ଏପରି କି ନିଜର ପୁଅଝିଅ ଭାଇବନ୍ଧୁଙ୍କୁ ଛାଡ଼ି ଦେଇ ଅନ୍ୟ ଅଞ୍ଚଳକୁ ପଳାଇ ଗଲେ ।

ହିନ୍ଦୁ ମୁସଲମାନ ଗୋଳମାଳ ସହରରୁ କ୍ରମେ ଗ୍ରାମମାନଙ୍କୁ ବ୍ୟାପିଗଲା । ଗୋଟିଏ ଗ୍ରାମରେ ବହୁକାଳରୁ ହିନ୍ଦୁ ଓ ମୁସଲମାନ ରହିଥିଲେ । ମୁସଲମାନମାନଙ୍କ ସଂଖ୍ୟା ବେଶୀ । ସେ ଗ୍ରାମର ମୁଖିଆ ଲୋକ ଜଣେ ମୁସଲମାନ । ତାଙ୍କ ନାମ ଅହମ୍ମଦ ବକ୍ସ । ସେ କି ହିନ୍ଦୁ, କି ମୁସଲମାନ ସମସ୍ତଙ୍କର ଉପକାର କରନ୍ତି । ତେଣୁ ସମସ୍ତେ ତାଙ୍କୁ ମାନି ଚଳୁଥାନ୍ତି ।

ସେ ଶୁଣି ପାରିଲେ ଯେ, ଗ୍ରାମର ମୁଲସମାନମାନେ ହିନ୍ଦୁ-ମାନଙ୍କୁ ମାରିବା ପାଇଁ ବିଚାର କରୁଅଛନ୍ତି । ହିନ୍ଦୁମାନେ ଗ୍ରାମ ଛାଡ଼ି

ପଳାଇବେ, କି ମୁସଲମାନମାନଙ୍କ ସଙ୍ଗେ ମାରପିଟ କରିବେ ତାହା ବିଚାର କରୁଅଛନ୍ତି । ଅହମ୍ମଦ ରକ୍ସ ଏହା ଜାଣିପାରି ମନରେ ବଡ଼ ଦୁଃଖ କଲେ । କେତେ ଲୋକଙ୍କୁ ବୁଝାଇ କହିଲେ, ଦେଖ, ଭାଇ ଭାଇ ଭିତରେ କଳି କରି କିଛି ଲାଭ ନାହିଁ ।" କିନ୍ତୁ ତାଙ୍କ କଥା ଶୁଣୁଛି କିଏ ?

ସଞ୍ଜବେଳେ ଅହମ୍ମଦ ଦାଣ୍ଡ ପିଣ୍ଡାରେ ବସି ଗ୍ରାମର ବିଷୟ ଭାବୁଅଛନ୍ତି । ଦିନେ ଓଳିଏ ଭିତରେ କି ବିପଦ ଘଟିବ, ଏହା ଭାବି ତାଙ୍କ ଆଖିରୁ ଲୁହ ବହିଯାଉଥାଏ । ଠିକ୍ ଏହି ସମୟରେ ଜଣେ ବୁଢ଼ା ମୁସଲମାନ ସେଠାରେ ପହଞ୍ଚିଲା । ଏହି ବୁଢ଼ା ଜଣେ ବଡ଼ ପଣ୍ଡିତ । ସମସ୍ତେ ତାଙ୍କୁ ମୌଲବି ବୋଲି ଡାକନ୍ତି ଓ ମାନ୍ୟ କରନ୍ତି । ଅହମ୍ମଦ ତାଙ୍କୁ ଆଦର କରି ଡାକି ନେଇ ପାଖରେ ବସାଇଲେ । ସୁଖ ଦୁଃଖ କଥାବାର୍ତ୍ତା ହେଉହେଉ ବୁଢ଼ା ପଚାରିଲେ, "ତୁମ ମୁହଁରେ ଆଜି କାହିଁକି ହସ ନାହିଁ ? କାନ୍ଦୁଥିଲା ପରି ଦେଖା-ଯାଉଛି ।" ଅହମ୍ମଦ କହିଲେ, "ଆମ ଗ୍ରାମରେ ବଡ଼ ବିପତ୍ତି ପଡ଼ିଅଛି । ଏଠାରେ ହିନ୍ଦୁ ଓ ମୁସଲମାନମାନେ ଭାଇଭାଇ ପରି ଶହ ଶହ ବର୍ଷ ହେଲା ଚଳି ଆସୁଥିଲେ । ଏବେ ହଣାହଣି ହେବାକୁ ବସିଛନ୍ତି । ମୋ କଥା କେହି ଶୁଣିବାର ଆଶା ନାହିଁ । କଅଣ ହେବ, ବୁଝିପାରୁ ନାହିଁ । ଭାବୁଛି ଏପରି ହେଲେ ମୁଁ ପ୍ରାଣ ହରାଇ ଦେବି ।"

ମୌଲବି ସାହେବ କହିଲେ, "ମୁଁ ଅନେକ ଗ୍ରାମ ବୁଲି ଆସିଲିଣି ଅନେକ ଠାରେ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ହେବାର ଦେଖିଛି ଓ ଶୁଣିଛି । ସେମାନେ ଅନ୍ୟ ଆଡ଼କୁ ପଳାଇ-ଯାଉଛନ୍ତି । କିନ୍ତୁ ମୋ କଥା ଶୁଣି ମୁସଲମାନମାନେ ପୁଣି

ହିନ୍ଦୁମାନଙ୍କୁ ଡାକଆଣି ଗ୍ରାମରେ ରଖାଉ ଅଛନ୍ତି, ତାଙ୍କର ଯାହାକ୍ଷତି ହୋଇଥିଲା ତାହା ଦେଉଅଛନ୍ତି । ଯେଉଁମାନେ ମରିଯାଇଅଛନ୍ତି ତାଙ୍କ ପାଇଁ ଦୁଃଖ କରୁ ଅଛନ୍ତି । ଚେଷ୍ଟାକଲେ ଏଠାରେ ମଧ୍ୟ କୌଣସି ଗୋଳମାଳ ହେବ ନାହିଁ ।

ତା ଆରଦିନ ମୌଲବି ଓ ଅହମ୍ମଦ ଘର ଘର ବୁଲି ହିନ୍ଦୁ ମୁସଲମାନ ସମସ୍ତଙ୍କୁ ଡାକି ଗୋଟିଏ ସଭା କଲେ । ସଭାରେ ସେ କହିଲେ, "ଭାଇମାନେ, ଏକ ଈଶ୍ୱର ହିନ୍ଦୁମାନଙ୍କୁ ଜନ୍ମ ଦେଇଅଛନ୍ତି, ମୁସଲମାନମାନଙ୍କୁ ମଧ୍ୟ ଜନ୍ମ ଦେଇଅଛନ୍ତି । ସମସ୍ତେ ସେହି ଈଶ୍ୱରଙ୍କ ପୁଅଝିଅ । ସେଇ ଈଶ୍ୱର ସମସ୍ତଙ୍କର ପିତା । ଆମ୍ଭେମାନେ ସମସ୍ତେ ଭାଇ ଭଉଣୀ । ମନ୍ଦିରରେ ଡାକିଲେ ଈଶ୍ୱର ଯେପରି ଶୁଣନ୍ତି, ମସ୍‌ଜିଦ୍‌ରେ ଡାକିଲେ ମଧ୍ୟ ସେହିପରି ଶୁଣନ୍ତି । ଭାଇ ଭାଇ ମଧ୍ୟରେ କଳି ହେଲେ ଆମ୍ଭମାନଙ୍କର ପିତା ଭଗବାନ କଣ ସୁଖରେ ରହିପାରିବେ ? ମନରୁ ହିଂସା ଛାଡ଼ିଦିଅ । ମନେରଖ, ହିନ୍ଦୁମୁସଲମାନ ଭାଇ ଭାଇ ।" ଭାଇ ଭାଇ ମଧ୍ୟରେ କଳହ ସୁନ୍ଦର ନୁହେଁ ।

ମୌଲବିଙ୍କ କଥା ସମସ୍ତଙ୍କ ମନକୁ ପାଇଲା । ସେହି ଦିନଠାରୁ ସେ ଗ୍ରାମରେ ହିନ୍ଦୁମୁସଲମାନ ମିଳିମିଶି ଚଳିଲେ ।

## ପ୍ରଶ୍ନ

୧ । ଅହମ୍ମଦ ବକ୍‌ସ କାହିଁକି ପ୍ରାଣ ହରାଇବାକୁ ବସିଥିଲେ ?

୨ । ସଭାରେ ମୌଲବି ଲୋକଙ୍କୁ କଅଣ ବୁଝାଇଲେ ?

୩ । ସଂଶୋଧନ କରି ଲେଖ:—

(କ) ହିନ୍ଦୁମୁସଲମାନଙ୍କ ପୁଅଝିଅ ।

(ଖ) ନୂଆଖାଲିରେ ମୁସଲମାନ ବେଶୀ ।

(ଗ) ହିନ୍ଦୁମାନେ ମସ୍‌ଜିଦ୍‌ରେ ଦେବ ପୂଜା କରନ୍ତି ।

# ଦିଆସିଲି

ନିଆଁ ଅମ୍ଭମାନଙ୍କର ଗୋଟିଏ ବଡ଼ ଦରକାରୀ ଜିନିଷ, ନିଆଁ ନ ଥିଲେ ଅମ୍ଭେମାନେ କୌଣସି ଜିନିଷ ରାନ୍ଧି ଖାଇପାରନ୍ତେ ନାହିଁ । ପ୍ରଥମେ ଲୋକେ କପରି ନିଆଁର ବ୍ୟବହାର ଶିଖିଲେ ତାହା ଜଣାଯାଏ ନାହିଁ । ହଜାର ହଜାର ବର୍ଷ ହେଲାଣି ଲୋକେ ନିଆଁ ବ୍ୟବହାର କରି ଆସୁଛନ୍ତି, ଏ କଥା ସତ ।

ଦୁଇଖଣ୍ଡ କାଠକୁ ଖୁବ୍ ଜୋରରେ ଘଷିଲେ ନିଆଁ ବାହାରେ । ଖରାଦିନେ ଜଙ୍ଗଲରେ ଶୁଖିଲା କାଠ ସବୁ ଘଷି ହୋଇ ସେଥିରୁ ନିଆଁ ବାହାରି ଅନେକ ଜଙ୍ଗଲ ପୋଡ଼ିଯାଏ ।

ଖଣ୍ଡିଏ ପଥରକୁ ଆଉ ଖଣ୍ଡିଏ ପଥର କମ୍ବା ଲୁହାରେ ପିଟିଲେ ସେଥିରୁ ନିଆଁ ବାହାରିପଡ଼େ । ପୂର୍ବକାଳରେ ଲୋକେ ନିଆଁ ବାହାର କରିବାକୁ ଚକମକି ପଥର ବ୍ୟବହାର କରୁଥିଲେ । ଚକମକି ପଥରକୁ ଆଉଖଣ୍ଡିଏ ଠାଣ ପଥର କମ୍ବା ଲୁହାରେ ପିଟିଲେ ଟିକିଏ ଟିକିଏ ନିଆଁ ଝୁଲ ବାହାରେ । ସେହି ନିଆଁକୁ ଟିକିଏ ତୁଳା ବା ଖଣ୍ଡେ ସୋଲରେ ଧରି ଲୋକେ ନିଆଁ କରୁଥିଲେ ।

ଆଜିକାଲି ଚକମକି ପଥରର ଚଳନ ନାହିଁ । ନିଆଁ ପାଇଁ ଗୋଟାଏ ଦିଆସିଲି କାଠି ମାରିଦେଲେ ହେଲା । ଏବେ କି ଗରିବ କି ଧନୀ ସମସ୍ତେ ଦିଆସିଲି ବ୍ୟବହାର କରନ୍ତି ।

ଆଜକୁ ପ୍ରାୟ ଶହେ ବର୍ଷ ତଳେ ଜଣେ ଇଂରେଜ ଦିଆସିଲି ବାହାର କରିଥିଲେ । ଦିଆସିଲି କାଠି ଅଗରେ କେତେକ ବାରୁଦ ଭଳି ଜିନିଷ ବୋଳା ହୋଇଥାଏ । ଏହି କାଠିଗୁଡ଼ିକ ଗୋଟିଏ ଛୋଟ ବାକ୍ସରେ ଥାଏ । କାଠି ଅଗକୁ ବାକ୍ସ କଡ଼ରେ ଘଷି-ଦେଲେ ନିଆଁ ବାହାରିପଡ଼ି ଛୋଟିଟି ଜଳି ଉଠେ ।

ଦିଆସିଲି କାଠି ଓ ତାହା ରଖିବା ବାକ୍ସ ପାଇଁ ହାଲୁକା କାଠ ଦରକାର ହୁଏ । ୟୁରୋପର କେତେକ ଦେଶରେ ସେପରି କାଠ ଥିବାରୁ ସେ ଦେଶମାନଙ୍କରେ ଦିଆସିଲି ତିଆରି ହୋଇ ଆମ ଦେଶକୁ ବିକ୍ରି ପାଇଁ ଆସୁଥିଲା ।

ଅଳ୍ପ କେତେଦିନ ହେଲା ଆମ ଭାରତବର୍ଷରେ ଦେବଦାରୁ ଓ ଅନ୍ୟାନ୍ୟ କେତେକ ଗଛର କାଠରୁ ଦିଆସିଲି କାଠି ଓ ବାକ୍ସ ତିଆରି କରାଯାଉଛି । ଅନେକ ଦିଆସିଲି କାରଖାନା ମଧ୍ୟ ଭାରତରେ ବସିଲାଣି । ଆମେ ଆଜିକାଲି ଯେଉଁ ଦିଆସିଲି ବ୍ୟବହାର କରୁ-ଥାଏଁ, ତାହା ଆମରି ଦେଶରେ ତିଆରି । ଆମ ଦେଶରେ କାରଖାନା ହେଲେ ମଧ୍ୟ ଦିଆସିଲି କାଠି ଅଗରେ ଯେଉଁ ମସଲା ବୋଳାଯାଏ, ତାହା ଏଠାରେ ମିଳୁ ନ ଥିଲା । ତେଣୁ ତାହା ବିଦେଶରୁ ଆଣିବାକୁ ପଡୁଥିଲା । ଅଳ୍ପ ଦିନ ହେଲା ସେ ଅସୁବିଧା ଦୂର ହୋଇଅଛି ।

ଦଶ, ବାର ବର୍ଷ ଭିତରେ ଆମ ଦେଶରେ ଯେତେ ଦିଆସିଲି କାରଖାନା ବସିଲାଣି, ସେଥିରୁ ଜଣାଯାଉଛି ଯେ ଆମର ଦିଆସିଲି ଅଭାବ ହେବ ନାହିଁ । ଆମ ଦେଶରେ ଯେତିକି ଦିଆସିଲି ଆବଶ୍ୟକ ତାହା ଆମ ଦେଶ କାରଖାନାମାନଙ୍କରୁ ମିଳି ପାରିବ ।

## ପ୍ରଶ୍ନ

୧ । ଦିଆସିଲି ତିଆରି ହେବା ପୂର୍ବରୁ ଲୋକେ କିପରି ନିଆଁ ବ୍ୟବହାର କରୁଥିଲେ ?

୨ । ଦିଆସିଲି କିଏ ବାହାର କଲେ ଓ ତାହା କିପରି ତିଆରି ହୁଏ ?

୩ । ବିକ୍ରୀ, ଆବଶ୍ୟକ, ବ୍ୟବହାର—ଏ ଶବ୍ଦମାନ ଲଗାଇ ବାକ୍ୟ ଗଢ଼ ।

# ଆମ ଓଡ଼ିଶା

ଜାଗିଅଛୁ ଆଜ        ଯେତେ ଯହିଁ ଅଛୁ
ଆମେ ଓଡ଼ିଶାର ବାଳକ ଦଳ,
ନୂଆ କରି ଆମେ        ଗଢ଼ିବୁ ଏ ଦେଶ
ହୃଦୟେ ଅମର-ଅପାର ବଳ ।
ଆସୁ ପଛେ ମାଡ଼        ବିପଦ ତୋଫାନ
ଆଗେଇ ଚାଲିବୁ ସାହସ ଧରି,
ଜନମ ଭୂଇଁ ଏ        ଦେଶ ଲାଗି ଆମେ
ଅବସରେ ଦେବୁ ପରାଣ ବଳି ।
ମରଣକୁ ଆମେ        ଡରିଯିବୁ ନାହିଁ
ହେବୁ ଆମେ ବୀର ଧରମା, ବାଜ,
ଦେଶକୁ ମଣିବୁ        ଜୀବନରୁ ବଡ଼
ଏହି ପଣ ଆମେ ନେଉଛୁ ଆଜ ।
ନୂଆକରି ଆମେ        ଗଢ଼ି ଦେବୁ ପୁଣି
ପୁରୀ କୋଣାରକ ଦେଉଳମାନ,
ବାରବାଟୀ ଗଡ଼        ଆଉଥରେ ତୋଳି
ଫେରାଇ ଆଣିବୁ ଏ ଦେଶ ମାନ ।
ଅତଳ ସାଗରେ        ନାଆ ମେଲିଦେବୁ
ଆମେ ଏ ଦେଶର ସାଧବ ପୁଅ,

ଦୂର ବିଦେଶରୁ ଅରକ୍ଷିତ ଧନ
ଶୁଝିବ ଗରବ ଆଖିର ଲକ୍ଷ ।
ଏ ଦେଶର ବୀର ମୁକୁନ୍ଦ, ପ୍ରତାପ,
ଖାରବେଳ କଥା ପକାଇ ମନେ,
ଗଢ଼ିବୁ ନୂତନ ସଇନ-ବାହିନୀ
ନ ବହିବେ କେହି ବଇରୀ ଜଣେ ।
ଏ ଦେଶ ଆମର ହସି ଉଠିବ ରେ
ଗରବରେ ପୁଣି ଟେକିବ ମଥା,
ଚହଲ ପକାଇ ସାରା ଦୁନିଆରେ
ଖେଳିଯିବ ଦିନେ ଏ ଦେଶ କଥା ।

## ପ୍ରଶ୍ନ

୧ । ଆମର ଦେଶ ପାଇଁ କଅଣ କରିବା ଉଚିତ ?

୨ । ଧରମା ଓ ବାଜି ରାଉତ କଅଣ କରିଥିଲେ ?

୩ । ମୁକୁନ୍ଦ, ପ୍ରତାପ, ଖାରବେଳ କାହିଁକି ପ୍ରସିଦ୍ଧ ?

୪ । ତୁମ୍ଭେ ବଡ଼ ହେଲେ ଦେଶପାଇଁ କଅଣ କରିବ, ତାହା ବର୍ଣ୍ଣନା କରି ଜଣେ ବନ୍ଧୁଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖ ।

---

୧ । ଧରମା—କୋଣାର୍କ ଦେଉଳ କେହି ପୂରା କରି ପାରୁ ନ ଥିଲେ । ଧରମା ତାହା କଲା । ତା'ପରେ ବଢ଼େଇଙ୍କ ପ୍ରାଣ ରଖିବା ପାଇଁ ସେ ନିଜ ପ୍ରାଣ ଦେଇଥିଲା । ୪

୨ । ବାଜି ନିଜ ଦେଶର ଲୋକଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ପୁଲିସ ଗୁଳି ଆଗରେ ଛାତି ପତାଇ ମରିଥିଲା ।

୩ । ମୁକୁନ୍ଦଦେବ ଓଡ଼ିଶାରୁ କଳାପାହାଡ଼କୁ ତଡ଼ିବା ପାଇଁ ଯୁଦ୍ଧ କରୁ କରୁ ପ୍ରାଣ ହରାଇଥିଲେ ।

୪ । ପ୍ରତାପରୁଦ୍ରଦେବ ଅନେକ ରାଜ୍ୟ ଜୟ କରି ଓଡ଼ିଶାରେ ମିଶାଇ ଥିଲେ ।

୫ । ଓଡ଼ିଶାର ସମ୍ରାଟ ଖାରବେଳ ଉତ୍ତରରେ ମଗଧ ଓ ଦାକ୍ଷିଣାତ୍ୟରେ ଅନେକ ରାଜ୍ୟ ଜୟ କରିଥିଲେ ।

---

— ସମାପ୍ତ —

ବ୍ରହ୍ମପୁର ରଥ ପ୍ରେସରେ, ଶ୍ରୀରାମଚନ୍ଦ୍ର ରଥଙ୍କ ଦ୍ୱାରା ମୁଦ୍ରିତ ୧୯୫୩ ।